

ସେଇଦିନ 'କ୍ଲିଅରେସିଲ୍' କଥା ଜାଣିଲି"

ସେଦିନର କଥା ମୋର ଭଲରୂପେ ମନେ ଅଛି । ମୁଁ ଏତେ ଖୁସିଥିଲି ସେତେବେଳେ···ମୋ ନାନୀଙ୍କ ବାହାଘର କେବଳ ସପ୍ତାହେ ବାକି ଥାଏ । ଆଉ ମୁଁ ଦର୍ପଣ ଆଗରେ ନୂଆ ଲୁଗାପଟା ପିନ୍ଧି ଦେଖୁଥିଲି । ହଠାତ୍···ମୋ ମନରେ ଛନକା ପଶିଲା, ମୋ ଗାଲରେ ବ୍ରଣଟାଏ ଉଠିଛି । ହେ ଭଗବାନ, ପ୍ରଥମଥର ବ୍ରଣ ଉଠିଲା, ସିଏ ବି ଏଭଳି ସୁଖଦ ଅବସରରେ ! ମନରେ ଭାବନାର ଜୁଆର-ଭଟ୍ଟା, ସେତିକିବେଳେ ନାନୀ ବାହାରୁ ଆସିଲେ ଆଉ ମୋ ମୁହଁର ବ୍ରଣ ଦେଖି ସବୁ ବୁଝିଗଲେ ।
ସିଏ ବୁଝେଇଦେଲେ ଯେ, "ଆଲୋ ପାଗଳୀ, ଏଇ ବୟସରେ ସମସ୍ତଙ୍କର ବ୍ରଣ ବାହାରେ । ମୋର ବି ବାହାରିଥିଲା ଆଉ ମୁଁ କ୍ଲିଅରେସିଲ ବ୍ୟବହାର କରିଥିଲି । ତୋର ବି ଲଗେଇବା ଉଚିତ୍ ।" ବିଶ୍ୱାସ କର, ମୁଁ ବି ଲଗେଇଲି ଆଉ ବ୍ରଣ ସଫା ହୋଇଗଲା ।···

ଏଣିକି ତମେ ବି ଜାଣିଯାଇଥିବ ଯେ' ନାନୀ ବାହାଘର'ର ସେ ଅପାସୋରା ମଜା ମୁଁ ପ୍ରାଣଭରି ଉପଭୋଗ କରିଥିଲି ।



**କ୍ଲିଅରେସିଲ ବ୍ରଣସବୁ ସଫାକରିଦିଏ ଆଉ ନୂଆ ବ୍ରଣ ଉଠିବାକୁ ଦିଏ ନାହିଁ ।**




# କ୍ଲିଅରେସିଲ

**ବ୍ରଣ ବିଶେଷଜ୍ଞ ଇଚ୍ଛେ, ପ୍ରକୃତରେ କାମଦିଏ**

# eleventh century tonight.



Lucid articles that interpret Indian mythology and philosophy in terms the modern reader can understand.

Plus a fiction bonanza in every issue, written by some of the most well-known contemporary fiction writers. Ruskin Bond. Edith Pargeter. Manoj Das. And the best of Indian language fiction, translated to keep the flavour of the original.

All of which makes the Heritage a fascinating way to catch up with the past – and the present.

**A galaxy of well-known authors**

The Heritage carries articles by some of the most famous names in contemporary Indian literature and journalism. Regular contributors include M N Das, K A Abbas, M P Pandit, Prince Philip, Mulk Raj Anand.



And an expert panel of academicians who are authorities in their fields.

**Start your Heritage library today**

The Heritage now offers readers a unique money-back subscription scheme. Fill in the coupon below and enclose your annual subscription with it. If you are not satisfied with the first issue, please return it to us with your comments, within ten days, and we will refund your money in full.

---

Yes, I want to start my Heritage collection right away. I am enclosing a DD/MO for Rs 72 towards annual subscription.

Name: ..................................................

Address: ..................................................

..................................................

Mail your subscription to: **Dolton Agencies, 188 N.S.K. Salai, Vadapalani, Madras 600 026.**

---

CMP 1789

# ହକିନ୍‌ସ ସର୍ବାଧିକ ସୁରକ୍ଷିତ
# ସବୁଠୁ ଶୀଘ୍ର ରାନ୍ଧିଦିଏ ସ୍ୱାଦିଷ୍ଟ ଖାଦ୍ୟ

* ଉପରେ ଦିଆଯାଇଥିବା ଚିତ୍ର ହେଉଛି ୭.*
ଷ୍ଟାଣ୍ଡାର୍ଡ ବେସ ମଡେଲ

## ଭାରତୀୟ ସୁସ୍ୱାଦୁ ଖାଦ୍ୟ ରାନ୍ଧିବାର ଉପାୟ

**ବାମ୍ଫରେ ରନ୍ଧାହେଲେ ସମୟ ଓ ଇଂଧନ ବଚେ ।**

କେତେକ ଖାଦ୍ୟରେ ଏହା, ପୁଷ୍ଟିକର ଗୁଣ ବିଶେଷ କରି ପ୍ରୋଟିନ ଓ ଭିଟାମିନକୁ ଅକ୍ଷୁର ବଲକରି ବଜାୟ ରଖେ । ହକିନ୍‌ସର ୧୬୭ ପ୍ରକାର ସୁସ୍ୱାଦୁ ବ୍ୟଞ୍ଜନ-ବିଧି ରହିଛି ଓ ତାର ବିବରଣୀ, ଓଡ଼ିଆ ଓ ଆଉ ୧୧ ଟି ଭାରତୀୟ ଭାଷାରେ ପ୍ରକାଶିତ ରନ୍ଧା-ପୁସ୍ତିକାରେ ଦିଆଯାଇଛି । ପ୍ରତ୍ୟେକ କୁକର ସହିତ ଆପଣ ଚାହୁଁଥିବା ଭାଷାର ରନ୍ଧା-ପୁସ୍ତିକା ପାଇବେ ।

ହକିନ୍‌ସରେ ସବୁଠୁ ଶୀଘ୍ର ରନ୍ଧା ହୋଇଯାଏ କାରଣ ଏହାକୁ ଅଧିକ ଶକ୍ତିଶାଳୀ ଭାବେ ତିଆରି କରାଯାଇଛି ଓ ଏଥିରେ ବାମ୍ଫ ଖେଳେଇ ହେବା ପାଇଁ ଅଧିକ ସ୍ଥାନ ରହିଛି । ପରୀକ୍ଷା ଦ୍ୱାରା ପ୍ରମାଣିତ ହୋଇଛି ଯେ ହକିନ୍‌ସରେ ରାନ୍ଧିଲେ ବର୍ଷକୁ ପ୍ରାୟ ୩୦୦ ଟଙ୍କା ବଚେ ।

## ହକିନ୍‌ସ-ଆପଣଙ୍କର ସର୍ବାଧିକ ସୁରକ୍ଷା ପାଇଁ

ହକିନ୍‌ସ, ଦୁର୍ଘଟଣାରୁ ସୁରକ୍ଷିତ । ଏହାର ବଡ଼ି ଭିତରେ ଢାଙ୍କୁଣୀ ଭଲ କରି ବସିଯାଏ-କେବଳ ପ୍ରେସର କମ ହେଲା ପରେ ଯାଇ ଏହାକୁ ଖୋଲିହେବ । ଏହାର ସେଫ୍‌ଟି ଭଲ୍‌ଭ, ଦ୍ୱାଣ୍ଡଲ ବାଦ୍ ଚଳେଅଛି, ଯାହାକି ବାମ୍ଫକୁ ନିରାପଦରେ ତଳମୁହାଁ କରିଦିଏ ।

ପ୍ରତ୍ୟେକ ହକିନ୍‌ସର କ୍ୱାଲିଟିକୁ କଡ଼ାକଡ଼ି ଭାବେ ଯାଞ୍ଚ କରାଯାଏ ଓ ପ୍ରତ୍ୟେକ ହକିନ୍‌ସ ପାଇଁ ୫-ବର୍ଷର ଲିଖିତ ଗ୍ୟାରେଣ୍ଟି ରହିଛି । ଦେଶରେ ହକିନ୍‌ସର ୧୪୪ ଟି ଅନୁମୋଦିତ ସେବାକେନ୍ଦ୍ର ରହିଛି ଯେଉଁଠି ବିଶେଷଜ୍ଞମାନେ ଆପଣଙ୍କୁ ମାଗଣାରେ ସେବା ଯୋଗାନ୍ତି । ଏହି ସେବା କେନ୍ଦ୍ର ମାନଙ୍କରେ ଅସଲ ସ୍ପେୟାରପାର୍ଟ ମିଳେ ।

## ଅତି ଦୀର୍ଘସ୍ଥାୟୀ ଉତ୍ପାଦନ- ୩୮ ଟି ମଡେଲରେ

ପ୍ରତିଥର ଢାଙ୍କୁଣୀ ଖୋଲିଲାବେଳେ କିମ୍ବା ବନ୍ଦ କଲାବେଳେ, ହକିନ୍‌ସର ଗ୍ୟାସକେଟ କଡ଼ରେ ଘଷି ହେଉ ନ ଥିବାରୁ ଏହା ବେଶୀଦିନ ସ୍ଥାୟୀ ରହେ । ଏହାର ଧାତୁ ତିଆରି ସେଫ୍‌ଟୀ-ଭଲ୍‌ଭ ସାଧାରଣ ରବର ଭଲ୍‌ଭ ଠାରୁ ବେଶୀଦିନ ଯାଏ । ଉଚ୍ଚ ଗୁଣମାନର ପ୍ଲେଟିଙ୍ଗ ଯୋଗୁ ଏଥିରେ ଜଙ୍କ ଧରେ ନାହିଁ ।

ବିଶ୍ୱରେ ସର୍ବାଧିକ ବ୍ୟାପକ ଶ୍ରେଣୀର ହକିନ୍‌ସ ପ୍ରେସର କୁକର ମଧ୍ୟରୁ ବାଛି ନିଅନ୍ତୁ । ବାଛିବା ପାଇଁ ରହିଛି ୨ ରୁ ୨୨ ଲିଟର* ପର୍ଯ୍ୟନ୍ତ ସାଇଜର ୩୮ ଟି ମଡେଲ । ସେପରେଟର ସହିତ କିମ୍ବା ସେପରେଟର ନ ଥାଇ, ଷ୍ଟାଣ୍ଡାର୍ଡ କିମ୍ବା ହେଭୀ ବେସ୍, ଉତ୍ତାପ-ଅନୁକୂଳ ଆଲୁମିନିୟମ କିମ୍ବା ସବୁବେଳେ ଚକଚକ ଷ୍ଟେନଲେସ ଷ୍ଟିଲ କିମ୍ବା ଏଦୁଇର ସୁବିଧା ଥିବା ଅପୂର୍ବ 'ସାଟିଲନ'- ଯାହା ପସନ୍ଦ ବାଛି ନିଅନ୍ତୁ ।

## ଆପଣଙ୍କୁ ବାଛିବାରେ ସାହାଯ୍ୟ କରିବା ପାଇଁ ମାଗଣାରେ ପୁସ୍ତିକା

ଆପଣଙ୍କ ନିକଟତମ ହକିନ୍‌ସ ଡିଲରଙ୍କ ଠିକଣା ଜାଣିବା ପାଇଁ ଓ ୩୮ ଟି ଆକର୍ଷଣୀୟ, ମନଲୋଭା ହକିନ୍‌ସ ମଡେଲ ସଂପର୍କୀୟ ବିବରଣୀ ଥିବା ଏକ ରଙ୍ଗୀନ ପୁସ୍ତିକା ମାଗଣାରେ ପାଇବାପାଇଁ ଏହି ଠିକଣାରେ ଲେଖନ୍ତୁ : ହକିନ୍‌ସ ଡିପାର୍ଟମେଣ୍ଟ ୧୩୩, ପୋ. ଅ. ବକ୍ସ ୬୪୮୧, ବମ୍ବେ ୪୦୦ ୦୧୬




# ହକିନ୍‌ସ

**ସର୍ବୋତ୍ତମ ଭାବେ ରାନ୍ଧିବା ପା**
**ସର୍ବୋତ୍ତମ ପ୍ରେସର କୁକର**

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍ଡୀ

---

ଏଣିକ ଚନ୍ଦକଥାରେ ଭାରତର ମନ୍ଦରମାନଙ୍କ କାହାଣୀ ପରିବେଶିତ ହେଉଛି । ଏସବୁ କାହାଣୀ ଯେତିକ ହୃଦୟଗ୍ରାହୀ, ଭାରତର ଇତିହାସ ଓ ପରମ୍ପରା ବୁଝିବା ଦିଗରେ ସେତିକ ସାହାଯ୍ୟକାରୀ । ଆମର ତରୁଣ ପାଠକ-ପାଠିକାମାନେ ଏଥିରୁ ବହୁତ ଲାଭବାନ ହେବେ, ସନ୍ଦେହ ନାହିଁ ।

## ଅମରବାଣୀ

ଅଭ୍ୟାସେନ ନ ଲଭ୍ୟଂତେ, ଚତ୍ୱାରଃ ସହଜା ଗୁଣାଃ ।
ଦାତୃତ୍ୱମ୍, ପ୍ରିୟ ବକ୍ତୃତମ୍, କବତ୍ୱମୁଚିତଜ୍ଞତା ॥

[ଦାନଶୀଳତା, ପ୍ରିୟ ଭଷଣ କବତ୍ୱ ଓ ଉଚତ୍-ଅନୁଚତ ଜ୍ଞାନ—ଏ ଚାରି ଗୁଣ ସହଜାତ । ଅଭ୍ୟାସ ଦ୍ୱାରା ଏହା ଆୟତ୍ତ କରାଯାଇ ପାରେନା ।]

---

ବର୍ଷ : ୧୯ | ନଭେମ୍ବର ୧୯୮୫ | ଅଙ୍କ : ୫

ପ୍ରତିସଂଖ୍ୟା : ଟ. ୨.୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦



# ଜହ୍ନମାମୁଁ ସମ୍ବାଦ-ବିଚିତ୍ରା



## ଛାତ୍ରଙ୍କ ସାହସିକ ଅଭିଯାନ

ବୋମ୍ବେର 'ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍‌ନୋଲୋଜି'ର ଛଅ ଜଣ ଛାତ୍ର ନିକଟରେ ହିମାଳୟ ପର୍ବତମାଳାର ୬.୩୪୮ ମିଟର ଉଚ୍ଚ ଫଚର୍ଙ୍ଗ୍ ଶିଖର ଆରୋହଣ କରିବାରେ ସଫଳ ହୋଇଛନ୍ତି ।

## ପିଲାଙ୍କ ଚଳଚ୍ଚିତ୍ର ସଂସ୍ଥା



ବାଙ୍ଗାଲୋର ସହରର ଅଦୂରରେ ସାତ ଆଠ କୋଟି ଟଙ୍କା ବ୍ୟୟରେ ପିଲାଙ୍କ ପାଇଁ ଏସିଆର ସର୍ବବୃହତ୍ ଚଳଚ୍ଚିତ୍ର ସଂସ୍ଥା ନିର୍ମିତ ହେବ । 'ଭାରତୀୟ ଶିଶୁ-ଚଳଚ୍ଚିତ୍ର ସମିତି'ର ସଭାପତି ଶ୍ରୀ ଅମଲ ପାଲେକର୍ କହିଛନ୍ତି କି ଏଠାରେ ଖାଲି ଯେ ପିଲାଙ୍କ ପାଇଁ ଚିତ୍ର ନିର୍ମାଣ ହେବ, ତାହା ନୁହେଁ, ପିଲାଙ୍କ ଦ୍ୱାରା ମଧ୍ୟ ଚିତ୍ର ନିର୍ମାଣ ହେବ ।



## ପ୍ରାଗୈତିହାସିକ କଙ୍କାଳ

ଆରିଜୋନାର ଗୋଟିଏ ମରୁ ଅଞ୍ଚଳରେ ନିକଟରେ ଗୋଟିଏ ବିରାଟ ପ୍ରାଗୈତିହାସିକ ଦାନବାକାର ଜନ୍ତୁ (ଡିନୋସାର) ର କଙ୍କାଳ ମିଳିଛି । ଏହା ପ୍ରାୟ ୨୨୪୦ ଲକ୍ଷ ବର୍ଷ ତଳେ ଜୀବିତ ଥିଲା । ବିଶେଷଜ୍ଞମାନେ କହନ୍ତି ଏହାହିଁ ଏଯାଏ ମିଳିଥିବା ପ୍ରାଚୀନତମ କଙ୍କାଳ ।

# ଜାଣନ୍ତି କି ?

୧. ଭାରତବର୍ଷ ବାହାରେ କେଉଁ ଅଞ୍ଚଳର ନାମ ପ୍ରାଚୀନ କଳିଙ୍ଗର ସ୍ମୃତି ବହନ କରେ ?

୨. ଅଶୋକଙ୍କ କଳିଙ୍ଗ ଯୁଦ୍ଧ ପରେ କେଉଁ ମହାନ୍ ସମ୍ରାଟ କଳିଙ୍ଗକୁ ପୁଣି ଶକ୍ତିଶାଳୀ କଲେ ?

୩. କେଉଁ ଓଡ଼ିଆ ରାଣୀ ଲବଣ ସତ୍ୟାଗ୍ରହରେ ନେତୃତ୍ୱ ନେଇଥିଲେ ?

୪. ଓଡ଼ିଶାର କେଉଁ ମନ୍ଦିର ହାତୀ ଭଳି ?

୫. ଓଡ଼ିଶାର ବୃହତ୍ତମ ମେଳା ଚଡ଼କ କେଉଁଠି ହୁଏ ?

(୬୪ ପୃଷ୍ଠାରେ ଉତ୍ତର ଦେଖନ୍ତୁ)

ପ୍ରାଚୀନ ସାହିତ୍ୟର ଚରିତ୍ର :

# ଅନ୍ଧକାସୁର

ଅନ୍ଧକାସୁର ଥିଲା ଏକ ଭୟଙ୍କର ଦାନବ । ସେ ଯେ ଅନ୍ଧ ଥିଲା, ତାହା ନୁହେଁ, କିନ୍ତୁ ସେ ଥିଲା ଗର୍ବରେ ଅନ୍ଧ । ବ୍ରହ୍ମାଙ୍କ ବରରେ ସେ ଅତ୍ୟନ୍ତ ଶକ୍ତିଶାଳୀ ବନିଥିଲା ଓ ଦେବତା ଓ ମଣିଷଙ୍କ ଉପରେ ଭୀଷଣ ଅତ୍ୟାଚାର କରି ଚାଲିଥାଏ । ତାକୁ କେହି ଦମନ କରି ପାରୁ ନଥାନ୍ତି ।

ଦେବତା ଓ ଋଷିମାନେ ଯାଇ ମହାଧୀମାନ୍ ନାରଦ ମୁନିଙ୍କ ପାଖରେ ପହଞ୍ଚି ଦାନବର ଦମନ ପାଇଁ ସେ କିଛି କରନ୍ତୁ ବୋଲି ଅନୁରୋଧ ଜଣାଇଲେ ।

ନାରଦ ମନ୍ଦର ପର୍ବତରୁ ଏକ ପ୍ରକାର ଦିବ୍ୟ ସୁଗନ୍ଧ ପୁଷ୍ପ ସଂଗ୍ରହ କରି ସେ ମାଳ ପିନ୍ଧି ଅନ୍ଧକାସୁର ପାଖ ଦେଇ ଚାଲିଗଲେ ।

"ମୁନି ! ତମେ ଏ ଚମତ୍କାର ଫୁଲ କେଉଁଠାରୁ ଆଣିଲ ?" ଦାନବ ପଚାରିଲା ।

"ବାବୁ, ଇଏ କେବଳ ମନ୍ଦର ପର୍ବତରେ ମିଳେ ।" ନାରଦ ହସିଦେଇ କହିଲେ ।

ଅନ୍ଧକାସୁର ଯାଇ ମନ୍ଦର ପର୍ବତରେ ପହଞ୍ଚିଲା । ସେ ପର୍ବତ ହେଲା ମହାଦେବଙ୍କ ଆସ୍ଥାନ । ଶିବ ପାର୍ବତୀଙ୍କ ସମୀପକୁ କେବଳ ଶିବଭକ୍ତ ବା ବିଷ୍ଣୁଭକ୍ତ ଛଡ଼ା ଆଉ କେହି ଯାଇ ପାରନ୍ତି ନାହିଁ । ଦାନବ ଅନ୍ଧକାସୁର ଅହଂଚାଳିତ ହୋଇ ଶିବପାର୍ବତୀଙ୍କ ଉପସ୍ଥିତି ପ୍ରତି ଖାତିର୍ ନକରି ମାଡ଼ି ଯିବାରୁ ଶିବଙ୍କ ତ୍ରିଶୂଳ ଆସି ତାକୁ ବଧ କଲା ।






[ ୧୧ ]

[ଅଢକାୟୁ ପକ୍ଷୀ ଉପରେ ବସି ଚନ୍ଦ୍ରବର୍ମା ଆକାଶରେ ଉଡ଼ି ଚାଲିଥିଲେ । ହଠାତ୍ ପକ୍ଷୀଟି ଗୋଟିଏ ସରୋବରରେ ଭାସୁଥିବା କୁମ୍ଭୀରକୁ ଲକ୍ଷ୍ୟ କରି ଝାମ୍ପ ମାରିବା ଫଳରେ ଚନ୍ଦ୍ରବର୍ମା ଖସି ପଡ଼ିଲେ । କୌଣସି ମତେ କୂଳକୁ ଆସି ସେ ତାନ୍ତ୍ରିକ ଶଂଖୁ ଥିବା ପାହାଡ଼ ଆଡ଼େ ଗଲା ବେଳକୁ କାପାଳିନୀ ବୁଢ଼ୀର ଆର୍ତ୍ତନାଦ ଶୁଣି ତା' ପାଖରେ ପହଞ୍ଚିଲେ । ତା'ପରେ...]

ଦୁଇ ଶିଳାଖଣ୍ଡ ମଝିରେ କାପାଳିନୀ ପଡ଼ି ରହି ଅତ୍ୟନ୍ତ ନିମ୍ନ କଣ୍ଠରେ ଆର୍ତ୍ତନାଦ କରୁଥିବାର ଦେଖି ଚନ୍ଦ୍ରବର୍ମାଙ୍କ ବିସ୍ମୟର ସୀମା ରହିଲା ନାହିଁ । ଅଢକାୟୁ ଦୁଇ ପକ୍ଷୀ ଓ ଅଗ୍ନି ପକ୍ଷୀ ଭିତରେ ଯେଉଁ ଆଲୋଚନା ସେ ଶୁଣିଥିଲେ, ତାହା ମନେ ପଡ଼ିଲା । ଅଢକାୟୁ ପକ୍ଷୀ କବଳରେ ପଡ଼ି କାପାଳିନୀ ଏଯାଏ ଆସିଛି ବୋଲି ବୁଝିବାକୁ ତାଙ୍କର ଅସୁବିଧା ହେଲା ନାହିଁ ।

"କାପାଳିନୀ ! ତମେ ଆହତ ହୋଇ ନାହଁ ତ ? ସେ ଅଢକାୟୁ ପକ୍ଷୀ ଗଲା କୁଆଡ଼େ ?" ଚନ୍ଦ୍ରବର୍ମା ପଚାରିଲେ ।

କାପାଳିନୀ ଧୀର କଣ୍ଠରେ କହିଲା, "ଚନ୍ଦ୍ରବର୍ମା ! ବଡ଼ ପାଟିରେ କଥା କହିବ




ନାହିଁ । ଚାଲ, ଆଖପାଖରେ କୌଣସି ଗୁମ୍ଫା ଥିଲେ ଆଗେ ତା' ଭିତରକୁ ଚାଲ । ସେଠାରେ ସବୁ କଥା କହିବ । ବ୍ୟସ୍ତ ହେବାର କିଛି ନାହିଁ ନା, ମୁଁ ଆହତ ହୋଇ ନାହିଁ ।

ଚନ୍ଦ୍ରବର୍ମା ବୁଢ଼ୀକୁ ଧରି ଉଠାଇ ଦେଲେ ଓ ତା' ହାତ ଧରି ଧୀରେ ଧୀରେ ଆଗକୁ ନେଇଗଲେ । କାପାଳିନୀ ଏଣେ ତେଣେ ଅନାଇ କହିଲା, "ଚନ୍ଦ୍ରବର୍ମା ! ଆଗରେ ସେ ବୁଦା ଗୁଡ଼ିକଙ୍କ ସେପଟେ ଗୋଟିଏ ଗୁମ୍ଫା ଅଛି ବୋଲି ମନେ ହେଉଛି । ତମେ ଦେଖି ପାରୁଥିବ । ସେଆଡ଼େ ଚାଲ ।"

କାପାଳିନୀର ଦୃଷ୍ଟି ପ୍ରଖର କହିବାକୁ ହେବ । ବଣବୁଦା ଆଢୁଆଳରେ ସତରେ ଗୋଟିଏ ଗୁମ୍ଫା ଥିବାର ଚନ୍ଦ୍ରବର୍ମା ଦେଖି ପାରିଲେ । ସେମାନେ ତହିଁ ଭିତରେ ସତର୍କ ଭାବରେ ପ୍ରବେଶ କଲେ । ଆଗରେ ଏକ-ଜାତୀୟ ଉଚ୍ଚ ଘାସ ଗଛମାନ ଥିବାରୁ ବାହାରୁ ସେମାନଙ୍କୁ କେହି ଦେଖିବା ସହଜ ନଥିଲା ।

ଗୁମ୍ଫା ଭିତରେ ବେଶ୍ ପ୍ରଶସ୍ତ । ଗଛଲତା ଭେଦ କରି କିଛି ଆଲୁଅ ଭିତରେ ଆସି ପଡୁଥିଲା ।

କାପାଳିନୀ ଖଣ୍ଡିଏ ପଥରକୁ ଆଉଜି ପଡ଼ି ବସିଲା । ଚନ୍ଦ୍ରବର୍ମା ତା' ସାମନାରେ ବସି ପଡ଼ି ତାକୁ ପଚାରିଲେ, "କାପାଳିନୀ, ପ୍ରଥମେ ଗୋଟାଏ କଥା କୁହ । ତମେ ଏଠିକି ଆସିଛ ବୋଲି ତାନ୍ତ୍ରିକ ଶଙ୍ଖୁ ଜାଣେ କି ?"

କାପାଳିନୀ ହସିଲା ॥ "ଆରେ ବାବୁ, ଶଙ୍ଖୁ ଯଦି ମୁଁ ଏତେଦୂର ଆସିଯାଇଥିବା କଥା ଜାଣନ୍ତା, ତେବେ କି ସେ ଗୋଟିଏ ମୁହୂର୍ତ୍ତ ଶାନ୍ତିରେ ରହି ପାରନ୍ତା ? ମୋତେ ମାରି ପକାଇବା ନିମନ୍ତେ ଚେଷ୍ଟା କରନ୍ତା ନାହିଁ ? ମୁଁ ଗତ କାଲିଠାରୁ ଏଠାରେ ଆସି ରହିଛି । ମୋତେ ସେ ଅତିକାୟ ପକ୍ଷୀ ଦୁଇଟି ଧରିନେଇ ଯିବାକୁ ବହୁ ଚେଷ୍ଟା କରିଥିଲେ । କିନ୍ତୁ କାଳନାଗ ସେମାନଙ୍କୁ ଭୀଷଣ ଯୁଦ୍ଧ କରି ମାରି ପକାଇଛି ।"

"ତେବେ ତ ଚିନ୍ତା ନାହିଁ ! ବର୍ତ୍ତମାନ ରାତି । ଜହ୍ନ ଆଲୁଅ ସାହାଯ୍ୟରେ ମୁଁ ତାନ୍ତ୍ରିକ ଶଙ୍ଖୁର ଘର କେଉଁଠି ତାହା ଠଉରାଇବାକୁ

ଚେଷ୍ଟା କରେଁ ।" ଏହା କହି ଚନ୍ଦ୍ରବର୍ମା ଉଠି ଠିଆ ହେଲେ ।

କାପାଳିନୀ ଚନ୍ଦ୍ରବର୍ମାଙ୍କୁ ଅଟକାଇ କହିଲା, "ତମେ କ'ଣ ଅଗ୍ନିପକ୍ଷୀ କଥା ଭୁଲିଗଲ ? ରାତିରେ ଯଦି ଆମେ କାହାକୁ ଡରିଲେ ଡରିବା କଥା, ତେବେ ଅଗ୍ନିପକ୍ଷୀକୁ । ଯଦି କାଳନାଗ କୌଣସି ପ୍ରକାରେ ତାକୁ ମାରି ପକାଇବାକୁ ସକ୍ଷମ ହେବ, ତେବେ ଆମର ବଡ଼ ବିପଦ କଟିଯିବ । କାଳନାଗ ତା' ସାଧ୍ୟମତେ ଚେଷ୍ଟା କରିବ ନିଶ୍ଚୟ ।"

"କାଳନାଗ କ'ଣ ତମ ସହ ଏଠାକୁ ଆସିଛି ?" ଚନ୍ଦ୍ରବର୍ମା ବିସ୍ମିତ ହୋଇ ପଚାରିଲା ।

କାପାଳିନୀ ପୁଣି ହସିଲା ଓ କହିଲା, "ରାଜକୁମାର ! କାଳନାଗ ମୋ ଅପେକ୍ଷା ତମକୁ ଅଧିକ ଶ୍ରଦ୍ଧା କରେ ବୋଲି ମୋର ଧାରଣା । କାଳନାଗଠାରୁ ତମେ ସେ ଯାଦୁ ଗଛର ଫଳ ଖାଇବା କଥା ଶୁଣିଛି । ସେତେବେଳଠୁଁ ମୁଁ ଜାଣିଛି ଯେ ତମେ ଆସି ଏଠି ସୁରୁଖୁରୁରେ ପହଞ୍ଚିଯିବ । ତେଣୁ ତମକୁ ଏଠାରେ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇନାହିଁ ।"

କାପାଳିନୀ ଆହୁରି କିଛି କହିବାକୁ ଯାଉଥିଲା, କିନ୍ତୁ ହଠାତ୍ ସେ ଅଞ୍ଚଳ ଝଲସି ଉଠିଲା । ମନେ ହେଲା ବାହାରେ ଯେମିତି ବିସ୍ଫୋରଣ ହୋଇଛି ।



ଚନ୍ଦ୍ରବର୍ମା ଗୁମ୍ଫାର ଦ୍ୱାର ପାଖକୁ ଯାଇ ଅନାଇଲେ । ଅଳ୍ପ ଦୂରରେ କାଳନାଗ ଅଗ୍ନିପକ୍ଷୀ ସହ ଲଢୁଥିବାର ତାଙ୍କର ଦୃଷ୍ଟିଗୋଚର ହେଲା । ସେ ଉତ୍ତେଜିତ ହୋଇ କହିଲେ, "କାପାଳିନୀ ! ମୁଁ ଯାଇ କାଳନାଗକୁ ସାହାଯ୍ୟ କରେଁ ।"

"ନା, ରାଜକୁମାର, ନା । ତମେ ନିଜ ଶକ୍ତି ବର୍ତ୍ତମାନଠାରୁ ଖର୍ଚ୍ଚ କରନାହିଁ । ମୋର ବିଶ୍ୱାସ, କାଳନାଗ ଅଗ୍ନିପକ୍ଷୀକୁ ଶେଷ କରିଦେବ ।" ଏହା କହି କାପାଳିନୀ ଗୁମ୍ଫା ମୁହଁ ପାଖକୁ ଆସି ଚନ୍ଦ୍ରବର୍ମାଙ୍କ ଦୃଷ୍ଟି ଅନୁସରଣ କରି ଅନାଇଲା ଓ କହିଲା, "ଅଗ୍ନିପକ୍ଷୀ ମୁଁ ଏ ଅଞ୍ଚଳରେ ଆସି ପହଞ୍ଚିଥିବା କଥା ଜାଣି



ଯାଇଛି ବୋଲି ମନେ ହୁଏ । ସେ ଯଦି ଶଂଖୁଙ୍କୁ ଯାଇ ସେ ଖବର ଦେଇଦେବ, ତେବେ ଅଡୁଆ ହେବ । ତେଣୁ କାଳନାଗ ତାକୁ ଶୀଘ୍ର ଶେଷ କରିଦେଲେ ମଙ୍ଗଳ ହେବ ।"

ସେମାନେ ଲକ୍ଷ୍ୟ କରି ଦେଖିଲେ, କାଳନାଗ ଓ ଅଗ୍ନିପକ୍ଷୀ ଭିତରେ ଲଢ଼େଇ ତୁମୁଳ ହେଲଣି । ଦୁହେଁ ପରସ୍ପରଙ୍କୁ ଯଥାଶୀଘ୍ର ମାରିଦେବାକୁ ବ୍ୟଗ୍ର ଥିଲେ । ନିଜର ତୀକ୍ଷ୍ଣ ଚଞ୍ଚୁ ସାହାଯ୍ୟରେ ଅଗ୍ନିପକ୍ଷୀ କାଳନାଗର ତିନି ମୁଣ୍ଡକୁ ଛିନ୍ନଭିନ୍ନ କରିଦେବାକୁ ଚେଷ୍ଟା କରୁଥିଲା । କାଳନାଗ ନିଜ ଲାଂଗୁଡ଼କୁ ଅଗ୍ନିପକ୍ଷୀ ଦେହରେ ଗୁଡ଼ାଇ ତାକୁ କାବୁ କରିବାକୁ ତତ୍ପର ଥିଲା ।

ଅଗ୍ନିପକ୍ଷୀ ଦେହରୁ ଝଲକ ଝଲକ ନିଆଁ ବାହାରୁଥିଲା ଓ ସେଥିରେ କାଳନାଗର ଦେହ ସିଝି ଯାଉଥିଲା ! ତେଣେ କାଳନାଗର ଗରଳ ଫୁତ୍କାରରେ ଅଗ୍ନିପକ୍ଷୀ ଯେ କୌଣସି ମୁହୂର୍ତ୍ତରେ ଅଚେତନ ହୋଇଯିବ ବୋଲି ମନେ ହେଉଥିଲା ।

ସେ ଦୃଶ୍ୟ ଥିଲା ବଡ଼ ଭୟଙ୍କର । ଥରେ ଥରେ ମନେ ହେଉଥାଏ କାଳନାଗ ଆଉ ମୁଣ୍ଡ ଟେକି ପାରିବ ନାହିଁ । କିନ୍ତୁ ପରେ ପରେ ଦେଖାଯାଉଥାଏ ସେ ପ୍ରବଳ ବେଗରେ ବୁଲିପଡ଼ି ପକ୍ଷୀକୁ ପଛପଟରୁ ଦଂଶନ କରୁଛି । ଥରେ ଥରେ ମନେ ହେଉଥାଏ ଅତିକାୟ ପକ୍ଷୀ କାହିଲା ହୋଇଗଲାଣି; ତା' ପକ୍ଷମାନ ଦୁର୍ବଳ ହୋଇଗଲେଣି ? କିନ୍ତୁ ପୁଣି ଦେଖାଯାଉଥାଏ ସେ ସତେ ଅବା ପୁନର୍ଜୀବନ ପାଇ ଶତ୍ରୁ ଉପରେ ତେଣା ଝପଟାଇ ତାକୁ କାବୁ କରିବାକୁ ତତ୍ପର ହେଉଛି ! ବେଶ୍ କିଛି ସମୟ ଯାଏଁ କାପାଳିନୀ ଓ ଚନ୍ଦ୍ରବର୍ମା ସେଆଡ଼େ ଅନାଇ ରହିଲେ ।

"ଯଦି ଏ ଦୁଇଜଣଙ୍କ ଲଢ଼େଇର ଖବର କୌଣସି ପ୍ରକାରେ ମାଂତ୍ରିକ ଶଂଖୁ କାନରେ ଯାଇ ପଡ଼ିବ, ତେବେ ଆମ କଥା ସରିଲା !" ଚନ୍ଦ୍ରବର୍ମା ନିଜ ସନ୍ଦେହ ବ୍ୟକ୍ତ କଲେ ।

"ନା, ନା, ସେ ଭୟ ନାହିଁ । ଅଗ୍ନିପକ୍ଷୀ ଏଠାରେ ଥିବା ଯାଏ ନିଜର କୌଣସି ବିପଦର ସମ୍ଭାବନା ନାହିଁ ବୋଲି ଜାଣି

ଶଙ୍ଖ ଆଗମରେ ଶୋଇଯାଏ । ତା'ର ନିଦ ଅତ୍ୟନ୍ତ ଗାଢ଼ । ଅନ୍ଧକାର ହେବା ମାତ୍ରେ ସେ ଶୋଇଯାଏ— ସୂର୍ଯ୍ୟୋଦୟର କିଛି ସମୟ ପରେ ଯାଇ ସେ ଉଠେ । ତା' କଥା ମୁଁ ବେଶ୍ ଭଲ ଭାବରେ ଜାଣେ । ଚିନ୍ତା ନାହିଁ ।" କାପାଳିନୀ ଉତ୍ତର ଦେଲା ।

ସେତିକିବେଳେ ଅଗ୍ନିପକ୍ଷୀର ତୀକ୍ଷ୍ଣ ଚିତ୍କାର ଶୁଭିଲା । ମନେହେଲା, ତାହାହିଁ ତା'ର ଅନ୍ତିମ ଚିତ୍କାର । କାପାଳିନୀ ଓ ଚନ୍ଦ୍ରବର୍ମା ସେଆଡ଼େ ଅନାଇ ଦେଖିଲେ, ତା'ର ମୁଣ୍ଡ ଗୋଟାଏ ପଟକୁ ଢଳି ପଡ଼ୁଛି ।

ଅଗ୍ନିପକ୍ଷୀର କଣ୍ଠରେ କାଳନାଗ ଗୁଡ଼େଇ ହୋଇ ରହିଥିଲା । ଅଗ୍ନିପକ୍ଷୀ ପୁରାପୁରି ନିଶ୍ଚେଷ୍ଟ ହୋଇଯିବା ପରେ କାଳନାଗ ତାକୁ ଛାଡ଼ିଦେଲା, କିନ୍ତୁ ସଙ୍ଗେ ସଙ୍ଗେ ନିଜେ ନିସ୍ତେଜ ହୋଇ ତା' ପାଖରେ ପଡ଼ି ରହିଲା ।

"ଜୟ କାଳନାଗର ଜୟ! ବୀର ନାଗର ଜୟ!" ନିଜ ହିତାକାଂକ୍ଷୀ କାଳନାଗର ଜୟରେ ଖୁସି ହୋଇ ଚନ୍ଦ୍ରବର୍ମା ପାଟି କରି ଏହା କହି ଗୁମ୍ଫାରୁ ବାହାରି ତା' ଆଡ଼େ ଦୌଡ଼ିଗଲେ । କାପାଳିନୀ ମଧ୍ୟ ନିଜର ସମସ୍ତ ଶକ୍ତି ଖଟାଇ ଚନ୍ଦ୍ରବର୍ମାଙ୍କ ପଛେ ପଛେ ଦୌଡ଼ିଲେ ।

ଯେତେବେଳେ ଚନ୍ଦ୍ରବର୍ମା ଓ କାପାଳିନୀ ଯାଇ କାଳନାଗ ପାଖରେ ପହଞ୍ଚିଲେ, ସେତେବେଳେ ସେ ନିଷ୍ପ୍ରାଣ-ପ୍ରାୟ ହୋଇ ପଡ଼ିଥିଲା । ଦେହର ଅନେକ ସ୍ଥାନରୁ ରକ୍ତ ବାହାରୁଥିଲା ।





ଚନ୍ଦ୍ରବର୍ମା ଓ କାପାଳିନୀ ପାଖକୁ ଆସିବାର ଦେଖି କାଳନାଗ ନିଜ ଅବସ୍ଥା କଥା ଭୁଲିଯାଇ ଉତ୍ସାହରେ ଫଣାମୁଣ୍ଡ ଉପରକୁ ଉଠାଇଲା । ଚନ୍ଦ୍ରବର୍ମା ତା' ପାଖକୁ ଦୌଡ଼ିଯାଇ ତାକୁ ଆଉଁସି ଦେଲେ । ଅଗ୍ନିପକ୍ଷୀର ଦେହରୁ ବାହାରିଥିବା ନିଆଁ ଯୋଗୁଁ କାଳନାଗର ଦେହ କଳା ପଡ଼ି ଯାଇଥାଏ ।

ନିଜ ସେବକର ସେ ଅବସ୍ଥା ଦେଖି ଦୁଃଖରେ କାପାଳିନୀର କଣ୍ଠ ପ୍ରାୟ ରୁଦ୍ଧ ହୋଇ ଆସିଲା । ସେ କହିଲା, "କାଳନାଗ! ତୋ କଷଣ ଏଣିକି ଶେଷ ହେବ । ଶଂଖୁ ପାଖରୁ ସେ ଅପୂର୍ବ ଶକ୍ତିପୂର୍ଣ୍ଣ ଶଂଖଟି ମୋ ହସ୍ତଗତ ହେବା ମାତ୍ରେ ମୁଁ ତୋତେ ତୋ' ମଣିଷ ରୂପ ଫେରାଇ ଦେବି । ତେଣିକି ସ୍ୱାଧୀନ ହୋଇ ଯେଣେ ଇଚ୍ଛା ତୁ ତେଣେ ଯିବୁ ।"

କାପାଳିନୀର କଥା ଶୁଣି ଚନ୍ଦ୍ରବର୍ମା ଚେତି ଉଠିଲେ । ଶଂଖୁ ଘରେ ପଶି କାମ ହାସଲ କରିବା କଥା ସେ ପ୍ରାୟ ପାଶୋରି ଦେଇଥିଲେ । ସେ କହିଲେ, "କାପାଳିନୀ! ସୂର୍ଯ୍ୟୋଦୟ ପାଇଁ ଅଧିକ ବିଳମ୍ବ ନାହିଁ । ମୁଁ ତାଂତ୍ରିକ ଶଂଖୁ ଘର ଆଡ଼େ ଚାଲିଲି ।"

"ନା, ଚନ୍ଦ୍ରବର୍ମା, ବର୍ତ୍ତମାନ ତମେ ତାଂତ୍ରିକ ଶଂଖୁର ମଂତ୍ରପୂତ ଘରକୁ ଯିବା ଉଚିତ ହେବ ନାହିଁ । ମୁଁ ତା'କୁ ଦମନ କରିବା ନିମନ୍ତେ ଗୋଟାଏ ଉପାୟ ପାଇଁଛି । ଥୟ ଧର ।" କାପାଳିନୀ କହିଲା ।

"ସେ ଉପାୟଟି କ'ଣ, କାପାଳିନୀ?" ଚନ୍ଦ୍ରବର୍ମା ପଚାରିଲେ ।

"ପ୍ରତିଦିନ ସୂର୍ଯ୍ୟୋଦୟ ବେଳେ ଶଂଖୁ ଅଳ୍ପ ଦୂରରେ ଥିବା ଖଣ୍ଡିଏ ଶିଳା ଉପରେ ଠିଆ ହୋଇ ଚାରିଦିଗକୁ ଅନାଇ ମଂତ୍ରପାଠ କରେ । ସେ ଶିଳାଖଣ୍ଡ ବିଶେଷ ପ୍ରଶସ୍ତ ନୁହେଁ । ତା' ସାମନାରେ ଅତ୍ୟନ୍ତ ଗଭୀରରେ ଗୋଟିଏ ଜଳସ୍ରୋତ ଅଛି । ଯଦି ତମେ ତାକୁ ସେ ଶିଳାରୁ ତଳକୁ ଠେଲିଦେଇ ପାରିବ, ତେବେ ସେ ଗଭୀର ଜଳସ୍ରୋତରେ ପଡ଼ି ସେ ନିଶ୍ଚିହ୍ନ ହୋଇଯିବ ।" କାପାଳିନୀ କହିଲା ।



"କାପାଳିନୀ! ତମ ପ୍ରସ୍ତାବଟି ଟିକିଏ ବିସ୍ତୃତ ଭାବରେ କୁହ। ବର୍ତ୍ତମାନ ଅଧିକ ସମୟ ନାହିଁ।" ଚନ୍ଦ୍ରବର୍ମା ଅଧୀର ହୋଇ ପଚାରିଲେ।

"ଆଚ୍ଛା ହେଉ, ପାଖକୁ ଆସ। କହୁଛି।" ଏହା କହି କାପାଳିନୀ ଚନ୍ଦ୍ରବର୍ମାଙ୍କୁ ଗୋପନରେ କିଛି କହିଲା ଏବଂ ତା'ପରେ ଚେତାବନୀ ଶୁଣାଇ ଦେଲା: "ସାବଧାନ, ଏଥିରେ ଟିକିଏ ଏପଟ ସେପଟ ହେଲେ ସବୁ ଭଣ୍ଡୁର ହୋଇଯିବ।"

ଚନ୍ଦ୍ରବର୍ମା ନୀରବରେ ଛିଡ଼ା ହୋଇ କିଛି ଚିନ୍ତା କଲେ। ତା'ପରେ ସେ ପାଖରେ ଥିବା ଗୋଟିଏ ଉଚ୍ଚ ବୃକ୍ଷ ଆରୋହଣ କରି ପୂର୍ବ ଦିଗକୁ ଦୃଷ୍ଟିପାତ କଲେ। ତା'ପରେ ବୃକ୍ଷରୁ ଓହ୍ଲାଇ ଆସି କାପାଳିନୀ ପାଖକୁ ଯାଇ କହିଲେ, "କାପାଳିନୀ! ସୂର୍ଯ୍ୟୋଦୟ ନିମନ୍ତେ ବିଶେଷ ବିଳମ୍ବ ନାହିଁ। ବର୍ତ୍ତମାନ ଆମେ ଯାହା କରିବାର କଥା, ସେ ଦିଗରେ ପଦକ୍ଷେପ ନେବା ଉଚିତ। ତମେ ଓ କାଳନାଗ ଗୁମ୍ଫା ଭିତରକୁ ଯାଇ ଟିକେ ବିଶ୍ରାମ ନିଅ।"

ଚନ୍ଦ୍ରବର୍ମା ଏହାପରେ ପାଖରେ ଥିବା ଅନ୍ୟ ଗୋଟିଏ ବୃକ୍ଷ ଉପରକୁ ଚଢ଼ିଗଲେ ଓ ତରବାରି ବାହାର କରି ଗୋଟିଏ ପ୍ରକାର ଝାଣ ଲତା କାଟି ତହିଁରେ ଖଣ୍ଡିଏ ଲମ୍ବ ଦଉଡ଼ି ପ୍ରସ୍ତୁତ କଲେ। ସେ ଲତାତକ କାନ୍ଧରେ ପକାଇ ସେ ତରତର ହୋଇ ଗୋଟିଏ ପାହାଡ଼ ଆରୋହଣ କଲେ।

ପାହାଡ଼ ଉପରେ ଥିବା ଖଣ୍ଡିଏ ପଥର ଦେହରେ ଚନ୍ଦ୍ରବର୍ମା ସେ ଲତା-ଦଉଡ଼ିର ଗୋଟିଏ ପ୍ରାନ୍ତକୁ ବାନ୍ଧିଦେଲେ ଓ ଅନ୍ୟ ପ୍ରାନ୍ତକୁ ତଳକୁ ଛାଟିଦେଲେ। ସେହି ପଥର ଉପରେ ଠିଆ ହୋଇ ତାଂନ୍ତ୍ରିକ ଶଂଖୁ ସକାଳେ ମଂତ୍ରୋଚ୍ଚାରଣ କରିଥାଏ।

ଏ କାମ ଶେଷ କରି ଚନ୍ଦ୍ରବର୍ମା ଗୁମ୍ଫା ପାଖକୁ ଲେଉଟି ଆସିଲେ। ଗୁମ୍ଫା ପାଖରେ କାପାଳିନୀ ଉତ୍କଣ୍ଠା ସହକାରେ ଅପେକ୍ଷା କରିଥାଏ। ଚନ୍ଦ୍ରବର୍ମାଙ୍କୁ ଦେଖିବା ମାତ୍ରେ ସେ କେଇପାଦ ଅଗ୍ରସର ହୋଇ ପଚାରିଲା,

"ଚନ୍ଦ୍ରବର୍ମା! ଆମ ଆୟୋଜନ ଠିକ୍ ଭାବରେ ହୋଇଛି ତ?"

"ସେକଥା କିପରି କହିବ? ଦଉଡ଼ିର ଗୋଟିଏ ପ୍ରାନ୍ତ ମୁଁ ଶିଳା ଦେହରେ ବାନ୍ଧି ଦେଇଛି, ଅନ୍ୟ ପ୍ରାନ୍ତଟି ତଳକୁ ଫୋପାଡ଼ି ଦେଇଛି।" ଚନ୍ଦ୍ରବର୍ମା କହିଲେ।

"ବର୍ତ୍ତମାନ ତେବେ ଅପେକ୍ଷା କରିବା କଥା। ଯେଉଁ ମୁହୂର୍ତ୍ତରେ ଶଂଖ ସେ ପାହାଡ଼ ତଳ ଶିଳାଖଣ୍ଡ ଉପରେ ଛିଡ଼ା ହେବ, ସେହି ମୁହୂର୍ତ୍ତରେ ତଳେ ଝୁଲିଥିବା ଦଉଡ଼ିର ପ୍ରାନ୍ତ ଦେଶରେ ଗୋଟାଏ ଟାଣ ଦେବାକୁ ହେବ। ଶିଳାଖଣ୍ଡ ସହ ତାଂତ୍ରିକ ଶଂଖ ଆସି ଅତଳ ସ୍ରୋତଗର୍ଭରେ ପଡ଼ିବ।" କାପାଳିନୀ କହିଲା।

ସେ ଏତକ କହିସାରିବା ବେଳକୁ ଶଂଖ ପାହାଡ଼ ଚଢ଼ୁଥିବାର ଦେଖାଗଲା। କାପାଳିନୀ କଣ୍ଠସ୍ୱର ନିମ୍ନ କରି ଚନ୍ଦ୍ରବର୍ମାଙ୍କୁ କହିଲା, "ହେଇ ଦେଖ। ବର୍ତ୍ତମାନ ସାହସ ସଞ୍ଚୟ କର। ଟିକିଏ ହେଳା କଲେ ସୁଯୋଗ ଗୁଳିଯିବ।" ଚନ୍ଦ୍ରବର୍ମା ପାହାଡ଼ ଉପରକୁ ଅନାଇଲେ। ତାଂତ୍ରିକ ଶଂଖ ତାଙ୍କ ଆଖିକୁ ଭୟଙ୍କର ଦିଶୁଥାଏ। ଗୋଟିଏ ମୁହୂର୍ତ୍ତ ପାଇଁ ସେ ଶଙ୍କିଗଲେ। କିନ୍ତୁ ସଙ୍ଗେ ସଙ୍ଗେ ପୁଣି ଦମ୍ଭ ବାନ୍ଧିଲେ।

ଯେମିତି ଶଂଖ ଯାଇ ଶିଳାଖଣ୍ଡ ଉପରେ ଠିଆ ହୋଇ ପୂର୍ବ ଦିଗକୁ ଅନାଇ ନିଜ ମନ୍ତ୍ରଦଣ୍ଡ ଉଞ୍ଚାଇଛି, ସେମିତି ଚନ୍ଦ୍ରବର୍ମା ଦଉଡ଼ିରେ ଅତ୍ୟନ୍ତ ଜୋରରେ ଟାଣ ଦେଲେ। ଶିଳାଖଣ୍ଡ ଦୋହଲି ଗଲା। ତାଂତ୍ରିକ ଶଂଖର ହାତରୁ ତା' ମନ୍ତ୍ରଦଣ୍ଡ ଛିଟିକି ଯାଇ ଅଦୂରରେ ଥିବା ତା' ମନ୍ତ୍ର ଗୃହ ଦେହରେ ବାଜିଲା। ସଙ୍ଗେ ସଙ୍ଗେ ସେ ପୁରା ଘରଟି ଉତ୍ପାଟିତ ହୋଇ ସ୍ରୋତ ଗର୍ଭରେ ପଡ଼ିଲା। "ଧୋକା! ଧୋକା!" ବୋଲି ଚିତ୍କାର କରି ତାଂତ୍ରିକ ଶଂଖ ମଧ୍ୟ ଶିଳାଖଣ୍ଡ ସହ ତଳକୁ ଖସି ପଡ଼ି ଅଦୃଶ୍ୟ ହୋଇଗଲା। (କ୍ରମଶଃ)






# ମନ୍ତ୍ର-ସିଂହାସନ

ନିଶା ଗଡ଼ୁଥାଏ। ସାଇଁ ସାଇଁ ଶୀତଳ ପବନ ସାଙ୍ଗକୁ ମଧ୍ୟେ ମଧ୍ୟେ ବର୍ଷା ମଧ୍ୟ ପିଟୁଥାଏ। ବଜ୍ରଧ୍ୱନି ଓ ଶ୍ୱାନଶୃଗାଳଙ୍କ ରଡ଼ି ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ। ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୂର୍ତ୍ତିମାନ।

ତଥାପି ରାଜା ବିକ୍ରମାର୍କ ଟିକେ ମଧ୍ୟ ଦ୍ୱିଧା ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଏବଂ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ। କିନ୍ତୁ ତା'ପରେ ସେ, ଶବଟିକୁ କାନ୍ଧରେ ପକାଇ ଭୟାବହ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତମେ କାହା ପାଇଁ ଏ କଷ୍ଟକର କାମ ହାତକୁ ନେଇଛ? ସେ କାର୍ଯ୍ୟସିଦ୍ଧି ପରେ ତମ ଅଭିଳାଷ ପୂରଣ କରିବ ତ? ଥରେ ଥରେ

## ବେତାଳ କଥା



ଦେଖାଯାଏ କ୍ଷମତା ଥିବା ଲୋକେ ଅନ୍ୟର ହିତ କରିବାର ସୁଯୋଗ ଥାଇ ମଧ୍ୟ ସେ ଦିଗରେ କିଛି କରନ୍ତି ନାହିଁ; ପୁଣି ଥରେ ଥରେ ବିନା ଦ୍ୱିଧାରେ କାହାରି କାହାରି ମାଗୁଣି ପୂରଣ କରି ଦିଅନ୍ତି । ତମକୁ ଗୋଟାଏ ଉଦାହରଣ ଦେଉଛି । ମନଦେଇ ଶୁଣ । ଶ୍ରମଭାର ଲଘବ ମନେ ହେବ ।"

ବେତାଳ କହିଲା : ବୈଶାଳୀର ଗୋଟିଏ ପ୍ରାଚୀନ ମନ୍ଦିର ଥରେ ଭୁଷୁଡ଼ି ପଡ଼ିଲା । ରାଜା ସେସବୁ ପଥର ଘୁଞ୍ଚାଇ ସେଠାରେ ନୂଆ ମନ୍ଦିରଟିଏ ନିର୍ମାଣ କରିବାକୁ ସ୍ଥିର କଲେ ।

ସେ ସ୍ଥାନ ପରିଷ୍କାର କଲାବେଳେ ଗୋଟିଏ ସୁଡ଼ଙ୍ଗ ଆବିଷ୍କୃତ ହେଲା । ସେ ସୁଡ଼ଙ୍ଗ ଭିତରେ ଗୋଟିଏ ଅଦ୍ଭୁତ ସିଂହାସନ ଥିବାର ଦେଖାଗଲା । ସେ ସିଂହାସନ ବିଷୟରେ କିମ୍ବଦନ୍ତୀ ଜରିଆରେ ଲୋକେ ବହୁତ କଥା ଶୁଣିଥିଲେ । ଶହେ ବର୍ଷ ତଳେ ଜଣେ ତାନ୍ତ୍ରିକ ସେ ସିଂହାସନଟି ନିର୍ମାଣ କରିଥିଲେ । ସେ ସିଂହାସନର ଅଦ୍ଭୁତ ଗୁଣ ଥିଲା । କୌଣସି ବ୍ରତ ଉପବାସ କରି ଓ କିଛି ମନ୍ତ୍ର ପଢ଼ି ଯିଏ ସେ ସିଂହାସନରେ ଥରେ ବସି ପଡ଼ିବ, ସିଏ ଗୋଟାଏ ମହାଶକ୍ତିଶାଳୀ ବନିଯିବ ।

ରାଜା ସିଂହାସନଟି ଆଣି ନଅର ଭିତରେ ଗୋଟିଏ କକ୍ଷରେ ରଖିଲେ । ପ୍ରଥମେ ପ୍ରଥମେ ଶହ ଶହ ଲୋକ ତାକୁ ଦେଖିବାକୁ ଆସିଲେ । ରାଜା ସେଥିରେ କିଛି ଆପତ୍ତି କଲେ ନାହିଁ । କିନ୍ତୁ କେହି କେହି ଦର୍ଶକ ସେ ସିଂହାସନରେ ଗୋଟିଏ ବାୟବୀୟ ମୂର୍ତ୍ତି ବସିଥିବାର ଦେଖିଲେ । ସେ ମୂର୍ତ୍ତି ବିରକ୍ତ ଦିଶୁଥିଲା । ଦୁଇ ତିନିଜଣ ଦର୍ଶକ ମୂର୍ଚ୍ଛା ଗଲେ ମଧ୍ୟ ।

ରାଜା ହୁକୁମ ଦେଲେ କି ତେଣିକି ସେ କକ୍ଷକୁ କେହି ଯିବେ ନାହିଁ । କକ୍ଷ ଆଗରେ ଜଣେ ଜଗୁଆଳ ମଧ୍ୟ ରହିଲା ।

ରାଜାଙ୍କ ପାଖରେ ସବୁଦିନେ ପୁରାଣ ପାଠ କରୁଥାନ୍ତି ଶ୍ରୀଦେବ ନାମକ ବ୍ରାହ୍ମଣ । ଶ୍ରୀଦେବଙ୍କ ଘର ଗୋଟିଏ ଦୂରବର୍ତ୍ତୀ ଗ୍ରାମରେ । ତେବେ ସେ ରାଜଧାନୀରେ ଆସି ପ୍ରାୟ ଚାରିବର୍ଷ କାଳ ରହିଥିଲେ ।



ଦିନେ ଶ୍ରୀଦେବଙ୍କର ଜଣେ ବାଲ୍ୟବନ୍ଧୁ ନବଘନ ଗାଆଁରୁ ଆସି ଶ୍ରୀଦେବଙ୍କୁ ଦେଖା କଲେ। ଅନେକ ବର୍ଷ ପରେ ବାଲ୍ୟବନ୍ଧୁଙ୍କୁ ଦେଖି ଶ୍ରୀଦେବ ଖୁସି ହେଲେ। କିନ୍ତୁ ଯେତେବେଳେ ସେ ବନ୍ଧୁଟି ଆସିବାର କାରଣ ବୁଝିଲେ, ସେତେବେଳେ ତାଙ୍କ ଭ୍ରୁକୁଞ୍ଚିତ ହେଲା। ନବଘନ କହିଲେ କି ସେ ମନ୍ତ୍ର-ସିଂହାସନଟି ଦେଖିବାକୁ ଆସିଛନ୍ତି।

"ଆରେ ଭାଇ, ସେ ସିଂହାସନ ତ ଆଉ କାହାକୁ ଦେଖିବାକୁ ଦିଆଯାଉ ନାହିଁ!"

"ଭାଇ ଶ୍ରୀଦେବ! କାହାକୁ ନ ମିଳିବା ଓ ମୋତେ ନ ମିଳିବା କ'ଣ ଏକା କଥା? ମୁଁ ପରା ତମର ବନ୍ଧୁ!" ନବଘନ କହିଲେ।

"ମୋର ବନ୍ଧୁ ହେଲେ କ'ଣ ହେଲା? ରାଜାଙ୍କ ସ୍ୱତନ୍ତ୍ର ଅନୁମତି ବିନା ସେ ସିଂହାସନ ଦେଖିବା ସମ୍ଭବପର ନୁହେଁ।"

"ତମେ କ'ଣ ରାଜାଙ୍କଠୁଁ ମୋ ପାଇଁ ଅନୁମତି ଅଣାଇଦେଇ ପାରିବ ନାହିଁ?"

"ନା ଭାଇ, ମୁଁ ରାଜାଙ୍କୁ ପୁରାଣ ଶୁଣାଇ ପେଟ ପାଳିଥାଏଁ। ରାଜାଙ୍କ ଉପରେ ମୋର ସେଭଳି ପ୍ରଭାବ ନାହିଁ।"

ନବଘନ ହତାଶ ହୋଇ ସେଠାରୁ ଯାଇ ଗୋଟିଏ ଧର୍ମଶାଳାରେ ରହିଲେ ଓ ପରଦିନ ନଅରକୁ ଯାଇ କେତେ ଲୋକଙ୍କୁ ସେ ସିଂହାସନ କଥା ପଚାରିଲେ। ଯିଏ ଶୁଣିଲା ସେ ଯିଏ ଶ୍ରୀଦେବଙ୍କ ବନ୍ଧୁ, ଯିଏ କହିଲା, "ବାବୁ! ତମର ଚିନ୍ତା କ'ଣ? ଶ୍ରୀଦେବ ରାଜାଙ୍କୁ ଯାହା କହିବେ, ରାଜା ତାହା କରିବେ।"

ନବଘନ ସନ୍ଧ୍ୟାବେଳେ ଯାଇ ଶ୍ରୀଦେବଙ୍କୁ ଲୋକେ ଯାହା କହୁଛନ୍ତି, ସେକଥା କହିବାରୁ ଶ୍ରୀଦେବ କହିଲେ, "ଭାଇ, ଲୋକେ ଭୁଲ କହୁଛନ୍ତି। ତା'ଛଡ଼ା ଆଜି ମୁଁ ବଡ଼ ବ୍ୟସ୍ତ। ଜଣକୁ ଭୂତ ଲାଗିଛି। ଜଣେ ଭଲ ଗୁଣିଆ ପାଉ ନାହିଁ। ବଡ଼ ଚିନ୍ତାରେ ଅଛି।"

ନବଘନ ଫେରିଗଲେ। ପରଦିନ ସେ ଯାଇ ନଅରର ମୁଖ୍ୟ ଦ୍ୱାରପାଳ ସହ ବନ୍ଧୁତା କଲେ ଓ ମନ୍ତ୍ର-ସିଂହାସନ ଦେଖିବାର ଇଚ୍ଛା ବ୍ୟକ୍ତ କଲେ। ମୁଖ୍ୟ ଦ୍ୱାରପାଳ କହିଲେ,



"ଆଚ୍ଛା ହେଉ, ତମେ କାଲିକି ଆସ । ମନ୍ତ୍ରି-ସିଂହାସନ ଥିବା କକ୍ଷର ଜଗୁଆଳିକୁ କହିଦେବ । ସେ ତମକୁ ଦେଖାଇ ଦେବ । କିନ୍ତୁ ନଅର ଭିତରେ ପଶିବା ପାଇଁ ତମର ଖଣ୍ଡିଏ ଅନୁମତି ପତ୍ର ଲୋଡ଼ା । ସେ ପତ୍ର କେବଳ ରାଜାଙ୍କ ପାଖଲୋକଙ୍କ ଭିତରୁ କେହି ଦେଇ ପାରିବେ ।"

"ଶ୍ରୀଦେବ ଦେଇ ପାରିବେ ?" ନବଘନ ପଚାରିଲେ ।

"ନିଶ୍ଚୟ ! ଶ୍ରୀଦେବଙ୍କୁ ରାଜା ବହୁତ ସମ୍ମାନ କରନ୍ତି ।"

ନବଘନ ସନ୍ଧ୍ୟାବେଳେ ଶ୍ରୀଦେବଙ୍କୁ ଭେଟିଲେ ଓ ସେକଥା କହିଲେ । ଶ୍ରୀଦେବଙ୍କ ମୁହଁ ଗମ୍ଭୀର ଦେଖାଗଲା । ତେବେ ସେ ଅନୁମତିପତ୍ର ଦେଇଦେଲେ ଓ କହିଲେ, "ରାତି ସାରା ମୁଁ ଶୋଇନାହିଁ । ମୋର ଜଣେ ବନ୍ଧୁକୁ ସାପ କାମୁଡ଼ିଛି । ସେ ପ୍ରାୟ ଅଚେତ ହୋଇ ରହିଛନ୍ତି ।"

ନବଘନ ଅନୁମତି-ପତ୍ର ନେଇ ଚାଲିଯିବା ପରେ ପରେ ଶ୍ରୀଦେବ ଯାଇ ରାଜାଙ୍କୁ ଭେଟିଲେ ଓ କହିଲେ, "ପ୍ରଭୁ! ମନ୍ତ୍ରି-ସିଂହାସନ ସତର୍କ ପ୍ରହରୀମାନଙ୍କ ଅଧୀନରେ ରହିବା ଉଚିତ । ବର୍ତ୍ତମାନର ଦ୍ୱାରପାଳ ଓ ଜଗୁଆଳି ସେମାନଙ୍କ ପ୍ରିୟ ପରିଜନଙ୍କୁ ତାହା ଦେଖାଉଛନ୍ତି ।"

ରାଜା ସଙ୍ଗେ ସଙ୍ଗେ ଦ୍ୱାରପାଳ ଓ ମନ୍ତ୍ରି-ସିଂହାସନର ଜଗୁଆଳିକୁ ଅନ୍ୟ ବିଭାଗକୁ ବଦଳି କରି ଉଭୟ ସ୍ଥାନରେ ଦୁଇଜଣ ବିଶ୍ୱସ୍ତ ପ୍ରହରୀଙ୍କୁ ନିଯୁକ୍ତି ଦେଲେ ।

ପରଦିନ ନବଘନ ଅନୁମତି-ପତ୍ର ଧରି ନଅରକୁ ଯାଇ ତାଙ୍କ ପରିଚିତ ଦ୍ୱାରପାଳକୁ ଭେଟିଲେ । କିନ୍ତୁ ଦ୍ୱାରପାଳ ଦୁଃଖ କରି କହିଲା, "ବାବୁ! ମୋର ବନ୍ଧୁ ମନ୍ତ୍ରି-ସିଂହାସନର ଜଗୁଆଳି ଥିଲା । କିନ୍ତୁ ଆଜି ତା'ର ବଦଳି ହୋଇ ଯାଇଛି । ମୋର ମଧ୍ୟ । ମୁଁ ଆଉ କିଛି କରି ପାରୁ ନାହିଁ । ଯଦି ଶ୍ରୀଦେବ ଆପଣଙ୍କୁ ସାହାଯ୍ୟ କରିପାରିବେ ନାହିଁ ବୋଲି କହୁଛନ୍ତି, ତେବେ ଆପଣ ମନ୍ତ୍ରୀଙ୍କ ପାଖକୁ ଯାଆନ୍ତୁ ।"



ନବଘନ ସିଧା ମନ୍ତ୍ରୀଙ୍କ ଘରକୁ ଗଲେ । ମନ୍ତ୍ରୀ ପଦାକୁ ବାହାରିବା ବେଳକୁ ସେ ଲମ୍ବ ହୋଇ ତଳେ ପଡ଼ିଗଲେ ଓ ତାଙ୍କୁ ପ୍ରଣାମ କଲେ । ମନ୍ତ୍ରୀ ଆଶ୍ଚର୍ଯ୍ୟ ଓ ଆନନ୍ଦିତ ହୋଇ ପଚାରିଲେ, "ତମେ କିଏ କହୋ ? କ'ଣ ମାଗୁଣି ଅଛୁ ? ଚାକିରି, ନା ଟଙ୍କା ?"

"ମହାଭାଗ! ମୋର ସେ ଦୁଇଟିରୁ କିଛି ଲୋଡ଼ା ନାହିଁ । ମୋତେ ଥରେ ମନ୍ତ୍ର-ସିଂହାସନ ଦେଖାଇ ଦିଅନ୍ତୁ । ବହୁ ଦୂରରୁ ଏତିକ ଦେଖିବା ପାଇଁ ଆସିଛି ।" ନମ୍ର ଭାବରେ ନବଘନ କହିଲେ ।

"ହେଉ, ହେଉ । ଦେଖାଇ ଦେବା । କାଲି ଆସ । ମୁଁ ଖଣ୍ଡେ ଚିଠି ଲେଖିଦେବି । ନଅରର ତତ୍ତ୍ୱବଧାରଙ୍କୁ ଦେବ ।"

ନବଘନ ଖୁସି ହୋଇ ଚାଲିଗଲେ । ବାଟରେ ଶ୍ରୀଦେବଙ୍କୁ ଭେଟି ମନ୍ତ୍ରୀଙ୍କ ସହାନୁଭୂତିପୂର୍ଣ୍ଣ ବ୍ୟବହାର ବିଷୟ କହିବାରୁ ଶ୍ରୀଦେବ କହିଲେ, "ବେଶ୍, ଭଲ କଥା । ତମ ସହ ପରେ କଥା ହେବି । ମୋର ଜଣେ ପ୍ରବଳ ଶତ୍ରୁକୁ କିପରି ବଶ କରିବି ବା ଦମନ କରିବି, ସେହି ସମସ୍ୟାରେ ମୁଁ ବର୍ତ୍ତମାନ ଚିନ୍ତିତ ରହିଛି ।"

ନବଘନ ଚାଲିଯିବା ମାତ୍ରେ ଶ୍ରୀଦେବ ମନ୍ତ୍ରୀଙ୍କ ପାଖକୁ ଯାଇ କହିଲେ, "ମନ୍ତ୍ରୀବର! ଆପଣ ଆଜି ଜଣେ ଲୋକକୁ ମନ୍ତ୍ର-ସିଂହାସନ ଦେଖାଇବା ବିଷୟରେ କଥା ଦେଇଛନ୍ତି । ଭଲ କଥା । କିନ୍ତୁ ପରିଣତି ପାଇଁ ଆପଣ ଦାୟୀ ରହିବେ ।"

"ପରିଣତି କଥା ତ ମୁଁ ଭାବି ନାହିଁ! ଭଲ କଲେ ମୋତେ ଚେତାଇ ଦେଲେ! ମୋର ଏବେ ସେଥିରେ ପଶିବା କ'ଣ ଦରକାର!" ମନ୍ତ୍ରୀ କହିଲେ ।

ପରଦିନ ନବଘନ ଯାଇ ମନ୍ତ୍ରୀଙ୍କୁ ଭେଟିବା ମାତ୍ରେ ମନ୍ତ୍ରୀ କହିଲେ, "ତମେ ଏଠୁ ଗଲ! ମୁଁ ତମ ଇଚ୍ଛା ପୂରଣ କରି ପାରିବି ନାହିଁ!"

ନବଘନ ଚାଲି ଯାଉଁ ଯାଉଁ ମନ୍ତ୍ରୀ ତାଙ୍କ ସହିତ ଥିବା ଜଣେ ଅମାତ୍ୟଙ୍କୁ କହିବାର ଶୁଣିଲେ, "ଶ୍ରୀଦେବ ଏଥିରେ ଖୁସି ନୁହନ୍ତି; ନିଶ୍ଚୟ କିଛି କାରଣ ଥିବ!"



ନବଘନ ସିଧା ଶ୍ରୀଦେବଙ୍କ ପାଖକୁ ଯାଇ କହିଲେ, "ଶ୍ରୀଦେବ! ମୁଁ ଗାଁକୁ ଫେରି ଯାଉଛି।"

"ହଉ ଭାଇ! ମୋର ପ୍ରଭାବ ଥିଲେ ମୁଁ ତମକୁ ମନ୍ତ୍ର-ସିଂହାସନ ଦେଖାଇ ଦେଇଥାନ୍ତି!"

"ତମ ପ୍ରଭାବ ଅଛି ବୋଲି ତାହା ଦେଖିବାରୁ ମୁଁ ବଞ୍ଚିତ ହେଲି!" ନବଘନ ରୁକ୍ଷ ଭାବରେ କହିଲେ ଓ ଚାଲିଗଲେ।

ଶ୍ରୀଦେବ ସ୍ତବ୍ଧ ହୋଇ ରହି ନବଘନଙ୍କୁ ପଛରୁ ଡାକିଲେ ଓ କୁଣ୍ଢାଇ ପକାଇ କହିଲେ, "ଭାଇ! ରାଗ ନାହିଁ। ତମେ ଆଜି ମୋ ଘରେ ଅତିଥି ହୋଇ ରୁହ। ଆଗାମୀ କାଲି ତମକୁ ସିଂହାସନ ଦେଖାଇ ଦେବି। ତା'ପରେ ତମେ ଯିବ।"

ନବଘନ ରହିଗଲେ। ସେଦିନ ଓ ପରଦିନ ସକାଳେ ଶ୍ରୀଦେବ ନବଘନଙ୍କୁ ଭୁରି ଭୋଜନରେ ଆପ୍ୟାୟିତ କରି ନଅର ଭିତରକୁ ନେଇଗଲେ ଓ ସିଂହାସନ ଦେଖାଇଲେ। ନବଘନ ଆନନ୍ଦିତ ହୋଇ ଗାଁକୁ ଗଲେ।

ବେତାଳ ଟିକିଏ ଚୁପ୍ ରହି ହଠାତ୍ ରାଜାଙ୍କୁ ଧମକ ଦେଲାଭଳି କଣ୍ଠରେ ପ୍ରଶ୍ନ କଲା: "ରାଜା! ନବଘନ ଯେପରି ମନ୍ତ୍ର-ସିଂହାସନ ଦେଖିପାରିବେ ନାହିଁ, ସେପାଇଁ ଶ୍ରୀଦେବ ଏତେ ଚେଷ୍ଟା କଲେ। ପୁଣି ହଠାତ୍ ସେ ମନ ପରିବର୍ତ୍ତନ କରି କାହିଁକି ତାଙ୍କୁ ସିଂହାସନ ଦେଖାଇଲେ? ତାଙ୍କ ବ୍ୟବହାର ବିଚିତ୍ର ନୁହେଁ କି? ଏହାର ରହସ୍ୟ କ'ଣ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ। ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧ ଚ୍ୟୁତ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ କହିଲେ, "ନବଘନଙ୍କ ସହ ଶ୍ରୀଦେବଙ୍କର ଦୀର୍ଘ ଦିନ କୌଣସି ସମ୍ପର୍କ ନ ଥିଲା। ମନ୍ତ୍ର-ସିଂହାସନ ଦେଖିବାକୁ ନବଘନଙ୍କ ଆଗ୍ରହ ବିଷୟରେ ତାଙ୍କର ସନ୍ଦେହ ହେବା ସ୍ୱାଭାବିକ। କିଛି ବ୍ରତ ଉପବାସ କରି କୌଣସି ମନ୍ତ୍ର ପଢ଼ି କେହି ଯଦି ସେ ସିଂହାସନରେ ବସି ପଡ଼େ, ତେବେ ସେ ମହାଶକ୍ତିର ଅଧିକାରୀ ହେବ।

ନବଘନ ଏବେ ସେଭଳି ମଂତ୍ରତଂତ୍ର ଜାଣନ୍ତି କି? ଏହାହିଁ ହେଲା ଶ୍ରୀଦେବଙ୍କ ମନରେ ପ୍ରଶ୍ନ। କାରଣ ଶକ୍ତିର ଅଧିକାରୀ ହେବା ପରେ ଜଣେ ସେ ଶକ୍ତିର ଦୁରୁପଯୋଗ କରିପାରେ! ଶ୍ରୀଦେବ ବିଚକ୍ଷଣ ବ୍ୟକ୍ତି। ସେ ବାରମ୍ବାର ପରୀକ୍ଷା କରି ଦେଖିଲେ ନବଘନଙ୍କର ମଂତ୍ର-ତଂତ୍ରରେ କୌଣସି ଜ୍ଞାନ ନାହିଁ। ଜ୍ଞାନ ଥିଲେ ଜଣକୁ ଭୂତ ମାଡ଼ିବସିଥିବାର ଶୁଣି, ଆଉ ଜଣକୁ ସାପ କାମୁଡ଼ିଥିବାର ଶୁଣି, ପୁଣି ତାଙ୍କ ବନ୍ଧୁ ଶ୍ରୀଦେବ ଜଣେ ଶତ୍ରୁକୁ ବଶ ବା ଦମନ କରିବାକୁ ଅଧୀର ବୋଲି ଶୁଣି ନବଘନ ନୀରବ ରହି ନଥାନ୍ତେ। ବରଂ ସେ ଶ୍ରୀଦେବଙ୍କୁ ଖୁସି ରହିବା ନିମନ୍ତେ ଆଗ୍ରହରେ ନିଜ ମଂତ୍ରଜ୍ଞାନ ଦ୍ୱାରା ତାଙ୍କୁ ସାହାଯ୍ୟ କରିବାକୁ ବାହାରି ପଡିଥାନ୍ତେ।

ଶ୍ରୀଦେବ ଆହୁରି ସତର୍କତା ବି ଅବଲମ୍ବନ କଲେ। ସେ ନବଘନଙ୍କୁ ନିଜ ଘରେ ରଖି ଭୂରି ଭୋଜନ ଦେଲେ। ଯଦି ନବଘନ ବ୍ରତ ଉପାସ କରିଥାନ୍ତେ, ତାହା ଆଉ ସମ୍ଭବ ହେଲା ନାହିଁ।

ଶ୍ରୀଦେବ ମୂଳରୁ ଏ ଧନ୍ଦା ଏଡ଼ାଇ ଯିବାକୁ ଚାହୁଁଥିଲେ। କିନ୍ତୁ ଯେତେବେଳେ ସେ ବୁଝିଲେ ଯେ ନବଘନଙ୍କ ମନରେ ଇଚ୍ଛା କୌତୁହଳ ଛଡ଼ା ଆଉ କିଛି ନାହିଁ, ସେ ଭାବିଲେ, ବାସ୍ତବିକ ସେ କୌତୁହଳ ଚରିତାର୍ଥ କରିବା ଦିଗରେ ସେ କାହିଁକି ଅନ୍ତରାୟ ହେବେ? ନବଘନ ତ ବାସ୍ତବିକ ଦ୍ୱାରପାଳ ବା ମଂତ୍ରୀଙ୍କ ସାହାଯ୍ୟରେ ସିଂହାସନ ଦେଖି ପାରିଥାନ୍ତେ। ତାଙ୍କ ବନ୍ଧୁ ହୋଇଥିବାରୁ ନବଘନ କାହିଁକି ସିଂହାସନ ଦେଖିବାର ସୁଯୋଗ ହରାଇବେ? ତେଣୁ ସେ ଶେଷରେ ନବଘନ ସିଂହାସନଟି ଦେଖିବାର ବ୍ୟବସ୍ଥା କରିଦେଲେ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ଶରୀରସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡିଲା। (କଳ୍ପିତ)



# ଆରୋଗ୍ୟ ରହସ୍ୟ

ସୁବର୍ଣ୍ଣପୁରର ରାଜା ବିକ୍ରମସେନ ଦୀର୍ଘକାଳ ଅସୁସ୍ଥ ରହି ପ୍ରାଣର ଆଶା ଛାଡ଼ି ଦେଇଥିଲେ । ସେ ଯେଉଁଦିନ ସୁସ୍ଥ ହୋଇ ନଅରର ସଭାକକ୍ଷ ଭିତରକୁ ଆସିଲେ, ସେଦିନ ଅନେକ ଅମାତ୍ୟ ଓ ସମ୍ଭ୍ରାନ୍ତ ଲୋକେ ତାଙ୍କୁ ଅଭିନନ୍ଦନ ଜଣାଇବାକୁ ଆସି ପହଞ୍ଚିଥିଲେ ।

ହଠାତ୍ ସଭାଗୃହ ଭିତରକୁ ପଶି ଆସିଲା ଜଣେ ମଳମୁଣ୍ଡିଆ । ତା' ପଛେ ପଛେ ସଭାଗୃହ ଦ୍ୱାର ଜଗୁଥିବା ପ୍ରହରୀ ମଧ୍ୟ ଦୌଡ଼ି ଆସିଲା ଓ କହିଲା, "ମହିମା ! ମୁଁ ତିନିଦିନ ଧରି ଏହାକୁ ଭିତରକୁ ଆସିବାକୁ ଦେଉ ନଥିଲି । ବର୍ତ୍ତମାନ ମୁଁ ଅନ୍ୟଆଡ଼େ ଅନାଇଥିବା ବେଳେ ଏଇ ଆପଣଙ୍କୁ ଦେଖି ପକାଇ ବିଜୁଳି ବେଗରେ ପଶି ଆସିଲା ।"

"ଆଚ୍ଛା, ଆଚ୍ଛା, ତମେ ଯାଅ ।" ରାଜା ପ୍ରହରୀକୁ ବିଦାୟ କରି ଦେଇ ଲୋକଟି ଆଡ଼େ ଅନାଇଲେ । ଲୋକଟି ନତଜାନୁ ହୋଇ କହିଲା, "ମହିମା ! ଆପଣ ଅସୁସ୍ଥ ହେବାର ଜାଣି ମୁଁ ଆମ ଗାଁରେ ଥିବା ଦେବୀ କାଳୀଙ୍କୁ କହିଥିଲି କି ଆପଣ ସୁସ୍ଥ ହେଲେ ଭୋଗ ଦେବି । ଆପଣ ସୁସ୍ଥ ହେଲେଣି ଜାଣି ଭୋଗ ଦେଇ ନେଇ ଆସିଲି । ହେଲେ ଆପଣଙ୍କୁ ଭେଟି ପାରୁ ନଥିଲି ।" ଏହା କହି ଲୋକଟି ଭୋଗ ପୁଟୁଳା ଥୋଇ ଦେଇ ଚାଲିଗଲା । ପୁଟୁଳା ଖୋଲିବା ବେଳକୁ ଭୋଗ ଖରାପ ହୋଇ ଗଲାଣି । ସମସ୍ତେ ହସିଲେ । କିନ୍ତୁ ରାଜା ସଙ୍ଗେ ସଙ୍ଗେ ଲୋକଟିକୁ ଡକାଇ ସୁନାହାର ପିନ୍ଧାଇ ଦେଲେ । ସେ ଚାଲିଯିବା ଉତ୍ତାରୁ ରାଜା କହିଲେ, "ଆପଣମାନେ ସିନା ଭୋଗଟିକ ପୁରୁଣା ହୋଇଯାଇ ବାସୁଥିବାରୁ ହସିଲେ, କିନ୍ତୁ ଏହିଭଳି ଲୋକମାନଙ୍କ ଶ୍ରଦ୍ଧା, ବିଶ୍ୱାସ ଓ ପ୍ରାର୍ଥନା ମୋତେ ପୁନର୍ଜୀବନ ଦେଇଛି । ଏହାହିଁ ମୋର ଆରୋଗ୍ୟର ରହସ୍ୟ ।"





# ସଚ୍ଚା ଶିଳ୍ପୀ

ମନ୍ଦାକିନୀ ନଦୀ ତୀରରେ ମରକତପୁର ଗୋଟିଏ ସମୃଦ୍ଧ ଗ୍ରାମ ଥିଲା । ଏ ଗ୍ରାମର ଲୋକେ ସାହିତ୍ୟ, ସଙ୍ଗୀତ, ନୃତ୍ୟ ଇତ୍ୟାଦି କଳାର ବିଶେଷ ଆଦର କରୁଥିଲେ । ସେଥିପାଇଁ ସାରା ରାଜ୍ୟରେ ଏ ଗ୍ରାମର ବିଶେଷ ଖ୍ୟାତି ଥିଲା ।

ଗ୍ରାମବାସୀମାନେ ବାରମାସରେ ତେର ପର୍ବ ପାଳନ କରୁଥିଲେ । ତେବେ ସବୁଠାରୁ ବଡ଼ ଉତ୍ସବ ଥିଲା ଦେବୀ ମଙ୍ଗଳାଙ୍କ ବାର୍ଷିକ ପୂଜା । ମଙ୍ଗଳା ଗ୍ରାମର ଆରାଧ୍ୟା ଦେବୀ ବୋଲି ସମସ୍ତ ଗ୍ରାମବାସୀ ଏ ଉତ୍ସବରେ ମନପ୍ରାଣ ଢାଳି ଅଂଶ ଗ୍ରହଣ କରୁଥିଲେ ।

ଉତ୍ସବ ତିନିଦିନ ବ୍ୟାପି ଚାଲୁଥିଲା । ଶେଷ ସନ୍ଧ୍ୟାରେ ନୃତ୍ୟ ପରିବେଷଣ କରୁଥିଲେ ନୃତ୍ୟଶିଳ୍ପୀ ମାଳବିକା । ତାଙ୍କ ନୃତ୍ୟହିଁ ଥିଲା ଉତ୍ସବର ସବୁଠାରୁ ବେଶି ଜନପ୍ରିୟ ଆକର୍ଷଣ ।

ମାଳବିକା ଥିଲେ ବାସ୍ତବିକ ଜଣେ କୁଶଳୀ କଳାକାର । ନୃତ୍ୟକୁ ସେ ଜୀବନ ବୋଲି ଗ୍ରହଣ କରିନେଇଥିଲେ । ତାଙ୍କ ଯୋଗୁଁ ମରକତପୁରର ଅଧିବାସୀମାନେ ଯେ ଗର୍ବ ଅନୁଭବ କରୁଥିଲେ, ଏଥିରେ ସନ୍ଦେହ ନାହିଁ ।

ବର୍ଷେ ଅସୁସ୍ଥତା ଯୋଗୁଁ ସେ ନାଚି ପାରିଲେ ନାହିଁ । ଉତ୍ସବ ପରେ ତାଙ୍କୁ ଯିଏ ଦେଖିଲା ସିଏ କହିଲା, "ମାଳବିକା! ତୁମ ନୃତ୍ୟ ବିନା ଉତ୍ସବ ଏଥର ଶୁଖିଲା ଲାଗିଲା!"

ମାଳବିକା ମନେ ମନେ ବୁଝିଲେ ଯେ ତାଙ୍କୁ ବାଦ୍ ଦେଲେ ଉତ୍ସବ ବିଶେଷତ୍ୱ ହରାଇବ ।

ପରବର୍ଷ ଯେତେବେଳେ ଉତ୍ସବ ସମୟ ପାଖ ହୋଇ ଆସିଲା ଏବଂ ଉତ୍ସବ ସମିତି ଆୟୋଜନରେ ଲାଗି ପଡ଼ିଲେଣି ବୋଲି ମାଳବିକା ବୁଝିଲେ, ସେ ସମିତିର କର୍ମକର୍ତ୍ତା-

ଶ୍ରୀମତୀ ଆଶାଲତା ବେହେରା



ମାନେ ତାଙ୍କୁ ଭେଟନ୍ତୁ ବୋଲି ଖବର ପଠାଇଲେ ।

ମାଳବିକା ଏଭଳି ନିର୍ଦ୍ଦେଶ ଦେବା ସମିତିର କର୍ମକର୍ତ୍ତାମାନଙ୍କୁ ନୂଆ ଲାଗିଲା । ତେବେ ହୁଏତ ରଙ୍ଗମଞ୍ଚ ବା ଅନ୍ୟାନ୍ୟ ବ୍ୟବସ୍ଥା ସମ୍ପର୍କରେ ତାଙ୍କର କିଛି କହିବାର ଥିବ, କର୍ମକର୍ତ୍ତାମାନେ ଏଇଆ ଭାବିଲେ ।

ସମିତିର ସମ୍ପାଦକ ଓ କୋଷାଧ୍ୟକ୍ଷ ତାଙ୍କୁ ଭେଟିବାକୁ ଆସିଲେ ।

ମାଳବିକା ସେମାନଙ୍କୁ କୌଣସି ସମ୍ମାନ ନ ଦେଖାଇ କହିଲେ, "ଦେଖନ୍ତୁ, ଆପଣମାନେ ମୋତେ ମୋ ନୃତ୍ୟ ପାଇଁ ପ୍ରତିବର୍ଷ ମାତ୍ର ଶହେ ସ୍ୱର୍ଣ୍ଣମୁଦ୍ରା ଦିଅନ୍ତି । କିନ୍ତୁ ଏଣିକି ଦୁଇଶହ ସ୍ୱର୍ଣ୍ଣମୁଦ୍ରା ନ ଦେଲେ ମୋ ପକ୍ଷରେ ନୃତ୍ୟ ପ୍ରଦର୍ଶନ କରିବା ସମ୍ଭବପର ହେବ ନାହିଁ । ସେହି ଅନୁସାରେ ବ୍ୟବସ୍ଥା କରନ୍ତୁ ।"

ମାଳବିକାଙ୍କ ଏଭଳି ବ୍ୟବହାରରେ କର୍ମକର୍ତ୍ତାମାନେ ବିସ୍ମିତ ହେଲେ । ନୃତ୍ୟ ପ୍ରଦର୍ଶନ ହେବ ବୋଲି ପ୍ରଚାର ହୋଇ ଯାଇଥିଲା । ଦୂରରୁ ଲୋକେ ଆସିବେ । ଅଥଚ ମାଳବିକାଙ୍କୁ ଅଧିକ ଶହେ ସ୍ୱର୍ଣ୍ଣମୁଦ୍ରା ଦେଲାଭଳି ପୁଞ୍ଜି ସମିତିର ନଥିଲା । ପୁଣି, ରାଜ୍ୟର ନିୟମ ଅନୁସାରେ ଗୋଟିଏ ନିର୍ଦ୍ଦିଷ୍ଟ ପରିମାଣରୁ ଅଧିକ ଚାନ୍ଦା ଆଦାୟ କରିବାକୁ ହେଲେ ରାଜାଙ୍କ ଅନୁମତି ଲୋଡ଼ା ।

ସମିତିର ସଭାପତି ଓ ସମ୍ପାଦକ ରାଜାଙ୍କ ପାଖକୁ ଗଲେ ଓ ଯେଉଁ ସମସ୍ୟା ଉପୁଜିଥିଲା, ସେକଥା ରାଜାଙ୍କୁ ଜଣାଇଲେ । ରାଜା ଟିକିଏ ଚିନ୍ତା କରି କହିଲେ, "ଆଚ୍ଛା, ଅଧିକା ଅର୍ଥ ମୁଁ ଦେଇଦେବି । ଚାନ୍ଦା ଅସୁଲ କରିବା ଦରକାର ନାହିଁ । ତମ ଉତ୍ସବର ଶେଷ ଦିନ ପରା କେହି ବିଶିଷ୍ଟ ବ୍ୟକ୍ତି ପ୍ରବଚନ ଦିଅନ୍ତି? ଏ ବର୍ଷ କିଏ ଦେବେ?"

"ଆମେ ଏଯାଏ ତାହା ସ୍ଥିର କରି ନାହୁଁ, ମହାରାଜ!" ସମିତିର ସଭାପତି କହିଲେ ।

"ବେଶ । ମୋର ଜଣେ ବନ୍ଧୁ ସାଧୁ ହୋଇ ହିମାଳୟରେ ଥିଲେ । ତାଙ୍କ ନାମ ଧୀରାନନ୍ଦ । ତାଙ୍କୁ ପଠାଇବି?" ରାଜା ପଚାରିଲେ ।

ସଭାପତି ଓ ସମ୍ପାଦକ କହିଲେ, "ମହାରାଜ! ତାହାଠୁଁ ବଳି ଭଲ ଆଉ କ'ଣ ହୋଇପାରେ?"

ଉତ୍ସବର ଶେଷ ଦିନ ଯଥା ସମୟରେ ସ୍ୱାମୀ ଧୀରାନନ୍ଦ ଆସି ପହଞ୍ଚିଗଲେ । ଗ୍ରାମବାସୀମାନେ ତାଙ୍କୁ ବହୁତ ଶ୍ରଦ୍ଧା ସମ୍ମାନ ଦେଖାଇ ସ୍ୱାଗତ କଲେ ।

ସନ୍ଧ୍ୟାରେ ନୃତ୍ୟ ଆରମ୍ଭ ପୂର୍ବରୁ ସ୍ୱାମୀ ଧୀରାନନ୍ଦ ବକ୍ତୃତା ଦେଲେ । ତାଙ୍କୁ ସ୍ୱୟଂ ରାଜା ପଠାଇଥିବା ଯୋଗୁଁ ସବୁ ବିଶିଷ୍ଟ ଲୋକେ ସଭାରେ ଥା'ନ୍ତି । ଆଗରେ ମାଳବିକା ମଧ୍ୟ ବସିଥାନ୍ତି ।

କିଛି ଆଧ୍ୟାତ୍ମିକ କଥା କହିସାରି ଧୀରାନନ୍ଦ କହିଲେ, "ମଣିଷର ମହତ୍ତ୍ୱ ଜଣାଯାଏ ତା'ର କରୁଣା ବୋଧ କେତେଦୂର, ତହିଁରୁ । ଯେତେବେଳେ ଶିଶୁ କହେ, 'ମା! ତମେ କାଲି କୁଆଡେ଼ ଚାଲିଗଲ? ମୋତେ ଏକୁଟିଆ ବହୁତ ଭୟ ଲାଗିଲା!' ସେତେବେଳେ ମା ମନେ ମନେ ସିଦ୍ଧାନ୍ତ କରେ କି ସେ ଆଉ ଶିଶୁକୁ ଏକୁଟିଆ ଛାଡ଼ି କୁଆଡେ଼ ଯିବ ନାହିଁ । ମା ସେତେବେଳେ ଲଭ କ୍ଷତିର ବିଚାର କରେ ନାହିଁ । ଏହି ମାତୃ-କରୁଣାହିଁ ଯେ କୌଣସି ସ୍ତ୍ରୀ ଲୋକର ସବୁଠାରୁ ବଡ଼ ଗୁଣ । ଏହି କରୁଣା ଖାଲି ଶିଶୁ ପ୍ରତି ନୁହେଁ, ସ୍ୱାମୀ ତଥା ଅନ୍ୟ ସମସ୍ତଙ୍କ ପ୍ରତି ପ୍ରବାହିତ ହୁଏ । ସେହିପରି ଯିଏ ଗାୟିକା ବା ନର୍ତ୍ତକୀ, ସିଏ ଲାଭ କ୍ଷତିର ବିଚାର କରେ ନାହିଁ । ଭଗବାନ ତାକୁ କଳାଜ୍ଞାନ ଦେଇଛନ୍ତି । ତାକୁ ପରିବେଷଣ



କରିବା ତା'ର ସ୍ୱାଭାବିକ ଧର୍ମ ବୋଲି ସେ ତାହା କରେ । ଯେତେବେଳେ ଦର୍ଶକମାନେ କହନ୍ତି, 'ତମେ ନାଚିଲ ନାହିଁ ବୋଲି ଆମେ ଆନନ୍ଦରୁ ବଞ୍ଚିତ ହେଲୁଁ,' ସେତେବେଳେ ସଚ୍ଚା ଶିଳ୍ପୀ ନିଜକୁ ସମ୍ଭାଳି ପାରେ ନାହିଁ । ସେ ନିଜର ସବୁ ପ୍ରତିଭା ଖଟାଇ ନାଚେ । ଏହାହିଁ ତା'ର ମାତୃ-ହୃଦୟର ପରିଚୟ, ମହତ୍ କରୁଣାର ପରିଚୟ । ମଣିଷ ଏହିଭଳି ମହତ୍ତ୍ୱ ଯୋଗୁଁ ମଣିଷ ପଦବାଚ୍ୟ ।"

ମାଳବିକା ସ୍ତବ୍ଧ ହୋଇ ପ୍ରବଚନ ଶୁଣୁଥିଲେ । ସେ ସଭା ପରେ ଧୀରାନନ୍ଦଙ୍କୁ ଭେଟିବାକୁ ମନ୍ଦିର-ସଂଲଗ୍ନ କୋଠରି ଭିତରକୁ ଯାଇ ଆଶ୍ଚର୍ଯ୍ୟ ହୋଇ ଦେଖନ୍ତି ତ ଧୀରାନନ୍ଦ ବଦଳରେ ରାଜା ଠିଆ ହୋଇଛନ୍ତି । ସେ ବୁଝିଲେ, ରାଜାହିଁ ଧୀରାନନ୍ଦ ଛଦ୍ମବେଶରେ ଆସିଥିଲେ ।

କାନ୍ଦି ପକାଇ ମାଳବିକା କହିଲେ, "ମହାରାଜ! ମୋତେ କ୍ଷମା କରନ୍ତୁ । ଅହଂକାରର ବଶୀଭୂତ ହୋଇ ମୁଁ ମୋ କଳା ପ୍ରତି ଅସମ୍ମାନ କରିଛି । ଆପଣ ମୋର ଚକ୍ଷୁ ଖୋଲିଦେଲେ । ମୋର ମୋଟେ ପାରିଶ୍ରମିକ ଲୋଡ଼ା ନାହିଁ ।"

ଏହାର କିଛି ସମୟ ପରେ ମାଳବିକା ଯେଉଁ ନୃତ୍ୟ ପରିବେଷଣ କଲେ, ତାହା ଦେଖି ଦର୍ଶକମାନେ ଧନ୍ୟ ଧନ୍ୟ କହିଲେ । ନୃତ୍ୟ ଶେଷରେ ରାଜା ଘୋଷଣା କଲେ କି ମାଳବିକା ତେଣିକି ରାଜ୍ୟର ସମ୍ମାନିତ ନୃତ୍ୟଶିଳ୍ପୀ ରୂପେ ଗଣା ହେବେ । ସେ ରାଜକୋଷରୁ ଭତ୍ତା ପାଇବେ । ରାଜାଙ୍କ ଏ ଘୋଷଣାରେ ସମସ୍ତେ ଆନନ୍ଦିତ ହେଲେ ।

ମାଳବିକା କ୍ରମେ ନୃତ୍ୟଶିଳ୍ପୀ ହିସାବରେ ଅଧିକରୁ ଅଧିକ ଖ୍ୟାତି ଲାଭ କଲେ । ଯେଉଁ କନ୍ୟାମାନେ ନୃତ୍ୟ ଶିଖିବା ଦିଗରେ ଆଗ୍ରହ ପ୍ରକାଶ କଲେ, ସେମାନଙ୍କୁ ମଧ୍ୟ ସେ ନୃତ୍ୟ ଶିକ୍ଷା ଦେଲେ । କିନ୍ତୁ ସମସ୍ତଙ୍କୁ ସେ କହନ୍ତି, "କଳାର ମୂଲ୍ୟ ଟଙ୍କା ଦ୍ୱାରା ନିରୂପଣ କରିବ ନାହିଁ ।"





# ବୈରାଗ୍ୟ

[ ପୂର୍ବ ପ୍ରକାଶିତ ପରେ ]

ମହାରାଜା ମହାଜନକ ସନ୍ୟାସ ଜୀବନ ଯାପନ କରିବା ଉଦ୍ଦେଶ୍ୟରେ ରାଜପ୍ରାସାଦ ଛାଡ଼ି ଏକ ବଗିଚାରେ ଛୋଟ ଘରଟିଏ ବନାଇ ରହିଲେ । ସେ କଥାବାର୍ତ୍ତା ମଧ୍ୟ ପ୍ରାୟ ବନ୍ଦ କରିଦେଲେ । କିଛିଦିନ ପରେ ଦିନେ ସେ ତାଙ୍କ ସେବକକୁ ଡ଼ାକି କହିଲେ, "ମୋ ପାଇଁ କିଛି ଗେରୁଆ ବସ୍ତ୍ର ଓ ମାଟିର ଏକ ଭିକ୍ଷାପାତ୍ର ନେଇ ଆସ । ଆଉ ଗୋଟିଏ ବାରିକ ମଧ୍ୟ ଡ଼ାକି ଆଣିବୁ ।" ବାରିକ ଆସି ତାଙ୍କ ମୁଣ୍ଡ ଲଣ୍ଡା କରିଦେଲା ଓ ସେ ଗେରୁଆ ବସ୍ତ୍ର ପିନ୍ଧି ମାଟି ପାତ୍ରଟି ଧରି ଘର ଛାଡ଼ିଲେ । ତାଙ୍କୁ କେହି ଚିହ୍ନି ପାରିଲେ ନାହିଁ ।

କିଛି ସମୟ ପରେ ରାଣୀ ସିବଳୀ ଦେବୀ ବହୁତ ଖୋଜାଖୋଜି କରି ରାଜାଙ୍କୁ ନ ପାଇବାରୁ ରାଜାଙ୍କ ସେବକକୁ ଧରି ଆଣି ପଚାରିଲେ । ସେ ସବୁକଥା ଖୋଲି କହିଦେଲା । ଏସବୁ କଥା ଶୁଣି ସିବଳୀ ଦେବୀ ଓ ଅନ୍ୟାନ୍ୟ ରାଣୀମାନେ କ୍ରନ୍ଦନ କରିବାକୁ ଲାଗିଲେ । ତା'ପରେ ଯେଉଁ ଦିଗକୁ ମହାଜନକ ଯାଇଥିଲେ ସେଇ ଦିଗକୁ ଲକ୍ଷ୍ୟ କରି ରାଣୀମାନେ ଓ ପ୍ରଜାମାନେ ଚାଲିବାକୁ ଲାଗିଲେ । ବହୁ ରାସ୍ତା ଚାଲିବା ପରେ ସେମାନେ ମହାଜନକଙ୍କୁ ସନ୍ୟାସୀ ବେଶରେ ଗୋଟିଏ ବୃକ୍ଷ ଛାୟାରେ ବିଶ୍ରାମ କରୁଥିବାର ଦେଖିଲେ । ସେମାନେ ତାଙ୍କୁ ଲେଉଟିବାକୁ ଅନୁରୋଧ କଲେ । କିନ୍ତୁ ସେକଥା ସେ ସ୍ୱୀକାର କଲେ ନାହିଁ ।

ଇତିମଧ୍ୟରେ ରାଣୀ ମନ୍ତ୍ରୀଙ୍କୁ ଗୁପ୍ତରେ ଅଦୂରରେ ରାଜ୍ୟର କେତେକ ପରିତ୍ୟକ୍ତ ଘରମାନଙ୍କରେ ନିଆଁ ଲଗାଇ ଦେବାକୁ କହିଲେ । ନିଆଁ ଜଳିଲା । ରାଣୀ କହିଲେ,

"ଦେଖନ୍ତୁ ଆପଣଙ୍କ ସମ୍ପତ୍ତି ଜଳ ଛାରଖାର ହୋଇ ଯାଉଛି, ଚାଲନ୍ତୁ ରକ୍ଷା କରିବେ ।"

"ମୋର ସମ୍ପତ୍ତି ବୋଲି ଏବେ କିଛି ନାହିଁ । ତେଣୁ ରକ୍ଷା କରିବାର ପ୍ରଶ୍ନ ବା ଉଠୁଛି କିପରି ?" ରାଜା ଉତ୍ତର ଦେଲେ ।

ତା'ପରେ ରାଜା ପୁଣି ଚାଲିବାକୁ ଲାଗିଲେ । ରାଣୀ ଓ ପ୍ରଜାମାନେ ମଧ୍ୟ ତାଙ୍କ ପଛେ ପଛେ ଚାଲୁଥା'ନ୍ତି । ବହୁତ ଦୂର ଯିବା ପରେ ରାଜା ପଛକୁ ଅନାଇ ଦେଖିଲେ ସମସ୍ତେ ଆଗପରି ଚାଲିଛନ୍ତି । ରାଜା ପ୍ରଶ୍ନ କଲେ, "ଏ ରାଜ୍ୟର ରାଜା କିଏ ?"

ସମସ୍ତେ ଏକ ସ୍ୱରରେ ଉତ୍ତର ଦେଲେ, "ଆପଣ ।" ତା'ପରେ ରାଜା ତାଙ୍କ ହାତରେ ଥିବା ବାଡରେ ଗାରଟିଏ କାଟିଦେଇ କହିଲେ, "ତେବେ ମୋର ଆଦେଶ କେହି ଏ ଗାର ଡେଇଁ ଏପଟକୁ ଆସିବ ନାହିଁ । ସମସ୍ତେ ଏଇଠାରୁ ଫେରିଯାଅ ।"

ସମସ୍ତେ ସେଇଠି ଅଟକି ଗଲେ । କିନ୍ତୁ ରାଣୀ ଗାର ଡେଇଁ ତାଙ୍କ ପାଖକୁ ଚାଲିଗଲେ । ତାଙ୍କ ପରେ ପ୍ରଜାମାନେ ମଧ୍ୟ ଗାର ଡେଇଁ ଆସିଲେ ।

ରାଣୀ କହିଲେ, "ମହାରାଜ, ଆପଣ ମୋତେ ଓ ପ୍ରଜାମାନଙ୍କୁ ଥରେ ଦେଖନ୍ତୁ । ଆମେ ସମସ୍ତେ କିପରି ବ୍ୟାକୁଳ ହୋଇ ଆପଣଙ୍କୁ ଲେଉଟି ଯିବା ପାଇଁ କହୁଛୁ ।"

"ମୁଁ ସମସ୍ତଙ୍କୁ ତ୍ୟାଗ କରିଛି । ସ୍ତ୍ରୀ, ପୁତ୍ର, ପ୍ରଜା, ରାଜ୍ୟ ସବୁ କିଛି ।" ମହାଜନକ ଉତ୍ତର ଦେଲେ ।



"ମହାରାଜ ଆପଣ ସନ୍ନ୍ୟାସୀ ହେଲେ ମୋର ଦଶା କ'ଣ ହେବ?" ରାଣୀ କାନ୍ଦି କାନ୍ଦି କହିଲେ।

"ତମେ ଘରକୁ ଫେରିଯାଇ ପୁଅକୁ ରାଜସିଂହାସନରେ ବସାଇ ଦେଶ ଶାସନ କର। ପୁଅ ଯେପରି ସତ୍ୟବନ୍ତ ଓ ନିଷ୍ପାପ ରହେ ତାହାର ପ୍ରଯତ୍ନ କର।" ରାଜା କହିଲେ।

ସେଦିନ ଏମିତି ଢଙ୍ଗରେ କଥାବାର୍ତ୍ତା କରୁ କରୁ ସନ୍ଧ୍ୟା ହୋଇଗଲା। ସେଠାରେ ସେମାନେ ଛାଉଣୀ ପକାଇ ରହିଲେ। ରାତି ପ୍ରଭାତ ହୁଅନ୍ତେ ରାଜା ପୁଣି ତାଙ୍କର ଯାତ୍ରା ଆରମ୍ଭ କଲେ। ରାଣୀ ସିବଲ୍ଲି ଦେବୀ, ଅନ୍ୟ ରାଣୀ ଓ ପ୍ରଜାମାନଙ୍କୁ ପଛରେ ରଖି ନିଜେ ରାଜାଙ୍କ ସହିତ ଚାଲିଲେ।

ସେମାନେ ଯାଇ ଯାଇ ଏକ ଜନପଦରେ ପହଞ୍ଚିଲେ। ସେଠାରେ ଗୋଟିଏ ଝିଅ ଧାନ ଛେଚୁଥାଏ ଚାଉଳ ବାହାର କରିବା ପାଇଁ। ତା'ର ଗୋଟିଏ ହାତରେ ପଟେ ଚୁଡ଼ି ଓ ଅନ୍ୟ ହାତରେ ଦୁଇପଟ ଚୁଡ଼ି ଥାଏ। ଝିଅଟି ଧାନ ଛେଚିବା ବେଳେ ଦୁଇପଟ ଚୁଡ଼ି ପରସ୍ପର ଲାଗି ଝଣଝଣ ଶବ୍ଦ କରୁଥାଏ।

ରାଜା ସେହି ଦୃଶ୍ୟ ଦେଖି ଝିଅଟିକୁ ପଚାରିଲେ, "ତୁମର ଗୋଟିଏ ହାତରେ ଚୁଡ଼ି କିପରି ଶବ୍ଦ କରୁଛି, ଅନ୍ୟ ହାତରେ ତ କରୁନାହିଁ!"

ଝିଅଟି କହିଲା, "ପଟେ ଚୁଡ଼ି ହାତରେ ରହିଲେ ଭଲ। ଦୁଇଟି ରହିବାରୁ ଅଯଥା ଶବ୍ଦ ହୁଏ ଓ ଦ୍ୱିତୀୟଟି ଅନାବଶ୍ୟକ ମଧ୍ୟ।"



"ଦେଖିଲ, ଛୋଟ ଝିଅଟିର କଥାରେ ମହାନ୍ ଦର୍ଶନ ଅଛି । ରାଣୀ, ପ୍ରକୃତ ଦୃଷ୍ଟିରୁ ତମେ ମୋ ଜୀବନ ପାଇଁ ଓ ମୁଁ ତୁମ ଜୀବନ ପାଇଁ ଅନାବଶ୍ୟକ । ଏକଥା ହୃଦୟଙ୍ଗମ କରିବା ପରେ ତମେ ଯଦି ପୁଣି ମୋ ସହିତ ଆସ ତେବେ ଅଯଥା ତର୍କ କରିବା ସାର ହେବ ସିନା । ଏଇଠାରୁ ଫେରିଯାଅ ।" ରାଜା କହିଲେ ।

ରାଣୀ ସେଠାରେ ଏକ ମୁହୂର୍ତ୍ତ ପାଇଁ ଟିକିଏ ଅଟକି ଗଲେ । କିନ୍ତୁ ପର ମୁହୂର୍ତ୍ତରେ ପୁଣି ସ୍ୱାମୀଙ୍କ ପାଖରେ ଆସି ପହଞ୍ଚିଲେ ଓ ତାଙ୍କ ସହିତ ଚାଲିବାକୁ ଲାଗିଲେ । ବାଟରେ ଯାଉ ଯାଉ ଗୋଟିଏ କମାରଶାଳ ପଡ଼ିଲା । କମାର ଲୁହାର ସବୁ ହତିଆର ତିଆରି କରୁଥାଏ । ଗୋଟିଏ ନୂଆ ତୀର ହାତରେ ଧରି ସେ ତା'ର ଧାର ଯାଞ୍ଚ କରୁଥାଏ । ଗୋଟିଏ ଆଖି ବୁଜି ଓ ଅନ୍ୟଟିରେ ଧାର ପରୀକ୍ଷା କରି ଦେଖୁଥାଏ ।

ରାଜା ତାକୁ ପଚାରିଲେ, "ଗୋଟିଏ ଆଖିରେ କିପରି ଧାର ପରୀକ୍ଷା କରୁଛ ।"

କମାର କହିଲା, "ଧାର ପରୀକ୍ଷା ପାଇଁ ଗୋଟିଏ ଆଖି ଆବଶ୍ୟକ । ସେ କାମରେ ଅନ୍ୟ ଆଖି ନିରର୍ଥକ ।"

ରାଜା ରାଣୀଙ୍କୁ କହିଲେ, "ରାଣୀ, ଦେଖ, ତୁମେ ଏ କଥାରୁ କିଛି ବୁଝିଲ? ମୋର ବର୍ତ୍ତମାନର ଜୀବନ ଯାହାରେ ତୁମର ଉପସ୍ଥିତି ନିରର୍ଥକ । ଘରକୁ ଫେରିଯାଇ ପୁଅକୁ ସିଂହାସନରେ ବସାଇ ରାଜ୍ୟ ପାଳନ କର ।" ଏକଥା କହି ରାଜା ସେଠାରୁ ଝଡ଼ବେଗରେ ପ୍ରସ୍ଥାନ କଲେ ଓ ଦୂର ଜଙ୍ଗଲରେ ଅଦୃଶ୍ୟ ହୋଇଗଲେ । ରାଣୀ ସେଠାରେ ମୂର୍ଚ୍ଛିତ ହୋଇ ପଡ଼ିଗଲେ । ପରେ ପ୍ରଜାମାନେ ସେଠାରେ ପହଞ୍ଚି ତାଙ୍କର ସେବାଯତ୍ନ କରି ତାଙ୍କୁ ନଗରୀକୁ ଫେରାଇ ଆଣିଲେ ।

ରାଜାଙ୍କ କଥା ଅନୁସାରେ ରାଣୀ ପୁଅକୁ ସିଂହାସନରେ ବସାଇ ନିଜେ ବଗିଚାରେ ଛୋଟ କୁଟୀରଟିଏ ବନାଇ ସେଇଠାରେ ସନ୍ୟାସିନୀ ଜୀବନ ଯାପନ କରି ରହିଲେ ।








# ବଦ୍ରିନାଥ ଓ କେଦାରନାଥ

ଯୁଗ ଯୁଗ ଧରି ହିମାଳୟକୁ ଭାରତୀୟମାନେ ଗଭୀର ଶ୍ରଦ୍ଧା କରି ଆସିଛନ୍ତି । ମହାକବି କାଳିଦାସ ଏହାକୁ ଦେବତାତ୍ମା ବୋଲି ଆଖ୍ୟା ଦେଇଛନ୍ତି । ହିମାଳୟ ଦେବଦେବୀ, ଗନ୍ଧର୍ବ କିନ୍ନର ଇତ୍ୟାଦିଙ୍କ ବିହାରସ୍ଥଳ ବୋଲି ବିଶ୍ୱାସ କରାଯାଏ ।

ହିମାଳୟ ସବୁ ଯୁଗରେ ଅସଂଖ୍ୟ ସାଧୁ ସନ୍ନ୍ୟାସୀଙ୍କ ସାଧନା ସ୍ଥଳ ରୂପେ ପରିଚିତ । ସେଠାକାର ଶାନ୍ତ ସୁନ୍ଦର ପରିବେଶ ଧ୍ୟାନ ଧାରଣା ସକାଶେ ଯେ ଅତ୍ୟନ୍ତ ଅନୁକୂଳ ଏଥିରେ ସନ୍ଦେହ ନାହିଁ । ହିମାଳୟରେ ଇତସ୍ତତଃ ରହିଛି ଅନେକ ପୁଣ୍ୟସ୍ଥଳ ।





ହିମାଳୟର ପ୍ରାଚୀନତମ ପୁଣ୍ୟସ୍ଥଳମାନଙ୍କ ଭିତରେ ଅନ୍ୟତମ ହେଲା ବଦ୍ରିନାଥ । ଏହା ବିଷ୍ଣୁଙ୍କ ସ୍ଥାନ । ଏହିଠାରେ ମହର୍ଷି ବ୍ୟାସଦେବ ମହାଭାରତ ରଚନା କରିଥିଲେ । ସେ କହିଯାଉଥାନ୍ତି, ଲେଖୁଥାନ୍ତି ଦେବ ଶ୍ରୀ ଗଣେଶ ।




ଅନେକ ବର୍ଷ ତଳେ ସେଠାରେ ବିଷ୍ଣୁଙ୍କ ପାଇଁ ଏକ ମନ୍ଦିର ଥିଲା । କିନ୍ତୁ ତୁଷାର ଝଡ଼ ଓ ଶିଳାଖଣ୍ଡମାନଙ୍କ ସ୍ଖଳନ ଏହାକୁ ଭାଙ୍ଗି ଦେଇଥିବା ସମ୍ଭବ । ବିଷ୍ଣୁଙ୍କ ପ୍ରତିମା ଅଳକାନନ୍ଦା ନଦୀ ଗର୍ଭରେ ଲୁଚି ଯାଇଥିଲେ । ଏହା ପରେ ବହୁ ବର୍ଷ ବିତି ଯାଇଛି । କ୍ୱଚିତ୍ କେହି ସେ ସ୍ଥାନକୁ ଯାଉଥିଲେ ।

ଭାରତ ଭ୍ରମଣରେ ବାହାରି ଶଙ୍କରାଚାର୍ଯ୍ୟ ଯାଇ ସେଠାରେ ପହଞ୍ଚିଲେ । ଧ୍ୟାନମଗ୍ନ ହୋଇ ପ୍ରତିମା କେଉଁଠି ଅଛନ୍ତି, ତାହା ସେ ବୁଝି ପାରିଲେ । ତାଙ୍କ ନିର୍ଦ୍ଦେଶରେ ନୂତନ ମନ୍ଦିର ତୋଳା ହେଲା । ସେ ପ୍ରତିମା ଉଦ୍ଧାର କରି ସେଥିରେ ସ୍ଥାପନ କଲେ । ନିୟମିତ ପୂଜା ପାଇଁ ସେ ବ୍ୟବସ୍ଥା କରିଦେଲେ ।





ଆଜିଯାଏ ଶଙ୍କରାଚାର୍ଯ୍ୟଙ୍କ ପ୍ରବର୍ତ୍ତିତ ବ୍ୟବସ୍ଥା ଚାଲି ରହିଛି । ଏକଦା କେବଳ ବହୁ କଷ୍ଟ ସ୍ୱୀକାର କରିବାକୁ ପ୍ରସ୍ତୁତ ଥିବା ଲୋକେ ବଦ୍ରିନାଥ ଯାଉଥିଲେ । ଆଜିକାଲି କିନ୍ତୁ ସେଠାକୁ ମୋଟର ଗାଡି ଯାଇ ପାରୁଛି । ତେଣୁ ବହୁ ତୀର୍ଥଯାତ୍ରୀ ସେଠାକୁ ଯାଆନ୍ତି ।

ବର୍ଷରେ ଛଅମାସ ବଦ୍ରିନାଥ ମନ୍ଦିର ବନ୍ଦ ରହେ । କାରଣ ପ୍ରବଳ ତୁଷାର ପାତ ହେତୁ ସେଠାରେ ପୂଜକମାନେ ରହିବା ସମ୍ଭବ ହୁଏ ନାହିଁ କି ଯାତ୍ରୀମାନେ ଯିବା ସମ୍ଭବ ହୁଏ ନାହିଁ । କିନ୍ତୁ ଦିଅଁଙ୍କ ପୂଜା ବନ୍ଦ ହୁଏ ନାହିଁ । ତାଙ୍କ ଚଳନ୍ତି ପ୍ରତିମା ଯୋଶିମଠ ଠାରେ ପୂଜା ପା'ନ୍ତି ।





ମନ୍ଦିର ଛଅମାସ ପାଇଁ ବନ୍ଦ ହେବା ପୂର୍ବରୁ ପ୍ରତିମା ଆଗରେ ପୂଜକ ଗୋଟିଏ ପ୍ରଦୀପ ଜଳାଇ ଦିଅନ୍ତି । ଶୀତ କାଳ ଗତ ହେଲେ ଯେତେବେଳେ ମନ୍ଦିର ଦ୍ୱାର ଖୋଲି ହୁଏ, ସେତେବେଳେ ପ୍ରଦୀପଟି ପ୍ରଜ୍ୱଳିତ ଥିବାର ଦେଖାଯାଏ । ବହୁ ଯୁଗରୁ ଏ ପ୍ରଥା ପ୍ରଚଳିତ ରହିଛି ।

ମହାଦେବଙ୍କ ଆସ୍ଥାନ ହେଲା କେଦାର-ନାଥ—ସମୁଦ୍ର ପତ୍ତନରୁ ୧୧,୭୩୫ ଫୁଟ ଉଚ୍ଚରେ ଅବସ୍ଥିତ । ଏଠାରେ ପହଞ୍ଚିବା ଆଜି ମଧ୍ୟ କଷ୍ଟ ସାଧ୍ୟ, କିନ୍ତୁ ଭକ୍ତମାନଙ୍କ ସକାଶେ ଏହାର ଆକର୍ଷଣ ଚିରନ୍ତନ । କାଳେ କାଳେ ଯାତ୍ରୀମାନେ ଏଠି ଆସି ପହଞ୍ଚିଛନ୍ତି ।





ଏହି ପଥରେ ଦିନେ ପଞ୍ଚପାଣ୍ଡବ ଓ ଦ୍ରୌପଦୀ ମହାପ୍ରସ୍ଥାନ କରିଥିଲେ । ଦ୍ରୌପଦୀ ପ୍ରଥମେ ମୃତ୍ୟୁ ଲଭିଥିଲେ । କେଦାରନାଥଠାରେ ଢଳି ପଡ଼ିଥିଲେ ସହଦେବ—କନିଷ୍ଠତମ ପାଣ୍ଡବ । ସେତେବେଳେ ଏ ପଥ ଆଜି ତୁଳନାରେ ବହୁ ଅଧିକ ଦୁର୍ଗମ ଥିଲା ।

ରୁଦ୍ର ହିମ ଲୟ ନାମରେ ବିଦିତ ଏହି ଅଞ୍ଚଳରେ ଶିବଙ୍କ ଉପସ୍ଥିତି ଅନୁଭବ କରିଥିଲେ ଯୁଧିଷ୍ଠିର । ସେହି କାଳରୁହିଁ ଏଠାରେ ଶିବ ପୂଜାର ପରମ୍ପରା ଚାଲି ଆସୁଛି । ବଦ୍ରିନାଥ ଭଳି କେଦାର ନାଥର ଐତିହ୍ୟ ମଧ୍ୟ ଅତ୍ୟନ୍ତ ପ୍ରାଚୀନ ।






କେଦାରନାଥରେ ପହଞ୍ଚିବାକୁ ହେଲେ ଆଜି ମଧ୍ୟ ଦୀର୍ଘପଥ ପାଦରେ ଚାଲି ଯିବାକୁ ପଡ଼େ । ଅବଶ୍ୟ ପଶୁ–ଯାନ ଓ ମଣିଷଙ୍କ ସାହାଯ୍ୟ ମିଳିବାର ବ୍ୟବସ୍ଥା ବି ରହିଛି । ବଦ୍ରିନାଥ ଭଳି କେଦାରନାଥ ମନ୍ଦିର ମଧ୍ୟ ବର୍ଷକରେ ପ୍ରାୟ ଛଅମାସ ବନ୍ଦ ରହେ । ତଥିଁ ସେତେବେଳେ ଉଖି ମଠରେ ପୂଜା ପାଆନ୍ତି ।



# ବିଜୟ ରହସ୍ୟ

ଅନେକ ଦିନ ତଳର କଥା । ଉଜ୍‌ବେକି-ସ୍ଥାନର ସୁଲତାନ୍ ରୂପେ ଅଭିଷିକ୍ତ ହେଲେ କମଲ୍‌ଦ୍ଦିନ୍ । ସେତେବେଳେ କମଲ୍‌ଦ୍ଦିନ୍ ବୟସରେ ତରୁଣ । ବାପା ହଠାତ୍ ମରିଯିବାରୁ ସେ ସିନା ସୁଲତାନ୍ ହେଲେ, କିନ୍ତୁ ଭୋଗବିଳାସ ଛାଡି ଶାସନ କାର୍ଯ୍ୟରେ ମନ ଦେବାକୁ ସେ ପ୍ରସ୍ତୁତ ନଥିଲେ ।

ଦିନେ ଉଜୀର୍ ଆସି କହିଲେ, "ସୁଲତାନ୍! ଆମ ଗୁପ୍ତଚରମାନେ କହୁଛନ୍ତି, ଉତ୍ତର ମୂଲକର ଅମୀର୍ ହଠାତ୍ ରାଜଧାନୀ ଆକ୍ରମଣ କରି ଗାଦି ଅଧିକାର କରିବା ମତ୍‌ଲବ୍‌ରେ ଅଛନ୍ତି । ଆମେ ବେଳହୁଁ ସତର୍କ ନହେଲେ ଅବସ୍ଥା ଅସମ୍ଭାଳ ହେବ ।"

ସୁଲତାନ୍ ଉଜୀରଙ୍କ କଥା ଶୁଣି ମଧ୍ୟ ନ ଶୁଣିଲା ଭଳି ରହିଲେ ଓ ପାଟିରେ ଗୋଟି ଗୋଟି କରି ଅଙ୍ଗୁର ପକାଇଲେ । ଉଜୀର କିଛି ସମୟ ଅପେକ୍ଷା କରି ପୁଣି ପଚାରିଲେ, "ଆଜ୍ଞା! କ'ଣ କରାଯିବ? ତୁରନ୍ତ ଏ ଦିଗରେ ଯଥାର୍ଥ ପଦକ୍ଷେପ ନ ହେଲେ ନ ହୁଏ । ଆପଣ ନିଜେ ତତ୍ପର ନହେଲେ ଅବସ୍ଥା ଅସମ୍ଭାଳ ହେବ । ସଙ୍ଗେ ସଙ୍ଗେ ଆମ ସୈନ୍ୟବାହିନୀଙ୍କୁ ଜାଗତଆର୍ କରିବା ଉଚିତ ।"

ସୁଲତାନ୍ କହିଲେ, "ସେକଥା ମୋତେ କାହିଁକି କହୁଛନ୍ତି?"

"ମାନେ? ଆପଣ ସୁଲତାନ୍ । ଆପଣଙ୍କୁ ନ କହି କହିବି କାହାକୁ?" ଉଜୀର କ୍ଷୁବ୍ଧ ହୋଇ ପଚାରିଲେ ।

"ଉଜୀର୍ ସାହେବ! ଆପଣଙ୍କର ବୁଦ୍ଧି ନାହିଁ ଦେଖୁଛି! ଆପଣ ଏକଥା ସିନା ମୋ ସେନାପତିଙ୍କୁ କହିବେ! ଆମର ବିରାଟ ସୈନ୍ୟବାହିନୀ ଅଛନ୍ତି, ସେନାପତି ଅଛନ୍ତି । ଯଦି ଶତ୍ରୁ ଆସି ରାଜଧାନୀ ଆକ୍ରମଣ କରିବ,

ତେବେ ସେମାନେ ଲଢ଼ ଶତ୍ରୁକୁ ହଟାଇ ଦେବେ । ବାସ୍ ! ମୋର ସେଥିରେ କରିବାର କ'ଣ ଅଛି ?" ସୁଲତାନ୍ କହିଲେ ।

ତାଙ୍କର ଏ ଉତ୍ତର ଶୁଣି ଦୀର୍ଘନିଃଶ୍ୱାସ ଛାଡ଼ି ଉଜୀର ସେଠାରୁ ଚାଲିଗଲେ ।

ଏହାର କିଛିଦିନ ପରେ ସବୁଠୁ ସବୁ ଉତ୍ତର ମୁଲକର ଅମୀର ରାଜଧାନୀ ଆକ୍ରମଣ କଲେ । ସୁଲତାନ୍‌ଙ୍କ ସୈନ୍ୟଦଳ ବାଧା ଦେଲେ, କିନ୍ତୁ ପରାସ୍ତ ହୋଇଗଲେ । ସୁଲତାନ୍ କୌଣସି ମତେ ତାଙ୍କ ଦୁର୍ଗ ଭିତରୁ ଆତ୍ମଗୋପନ କରି ଖସି ପଳାଇଗଲେ ।

ସେ ଯାଇ ଅନ୍ୟ ଜଣେ ସୁଲତାନ୍‌ଙ୍କ ପ୍ରାସାଦରେ ଆଶ୍ରୟ ନେଲେ । ସେ ସୁଲତାନ୍ ଥିଲେ ଜଣେ ଦକ୍ଷ ଶାସକ । ତାଙ୍କ ଗଡ଼ ଚାରିପାଖରେ ଗଡ଼ଖାଇ ଥିଲା । ତାଙ୍କ ଦୁର୍ଗ ଆକ୍ରମଣ କରିବା କାହା ପକ୍ଷରେ ସହଜ ନଥିଲା ।

କିଛିଦିନ ପରେ ସୁଲତାନ୍ କମଲ୍‌ଦ୍ଦିନ୍‌ଙ୍କୁ ତାଙ୍କ ଆଶ୍ରୟଦାତା କହିଲେ, "ତୁମେ ମୋ ସୈନ୍ୟଦଳ ନେଇଯାଇ ତମ ନିଜ ରାଜ୍ୟ ଉଦ୍ଧାର କର । ମୋ ସୈନ୍ୟବାହିନୀ କୁଶଳୀ ଏବଂ ମୋ ସେନାପତି ଖୁବ୍ ବୁଦ୍ଧିମାନ୍ ।"

ସୁଲତାନ୍ କମଲ୍‌ଦ୍ଦିନ ଖୁବ୍ ଖୁସି ହେଲେ । ତାଙ୍କ ଆଶ୍ରୟଦାତାଙ୍କ ସୈନ୍ୟବାହିନୀ ଧରି ସେ ନିଜ ରାଜ୍ୟକୁ ବାହାରିଲେ ।

ବାଟରେ ସେ ନିଜ ଭୋଗବିଳାସ କଥା ମନେ ପକାଇଲେ । ତାହା ମନେ ପକାଇବା ମାତ୍ରେ ପୁଣି ସେଥିରେ ମଜି ଯିବା ସକାଶେ ତାଙ୍କର ଇଚ୍ଛା ହେଲା । ସେ ଗୋଟିଏ ଗଛ



ମୂଳରେ ବସି ପଡ଼ି ତାଙ୍କ ଆଶ୍ରୟଦାତାଙ୍କ ସେନାପତିଙ୍କୁ କହିଲେ, "ତମେ ଖୁବ୍ ବୁଦ୍ଧିମାନ ବୋଲି ଜାଣେ । ଯାଅ । ମୋ ଦୁର୍ଗ ଦଖଲ କରି ମୋତେ ଖବର ଦିଅ । ତା'ପରେ ମୁଁ ଯିବି । ବର୍ତ୍ତମାନ ଟିକିଏ ଆରାମ କରେଁ ।"

ସେନାପତି ସୈନ୍ୟଦଳ ନେଇ ଚାଲିଗଲେ । ଦୁର୍ଗକୁ ଲେଉଟି କପରି ଆରାମରେ ଜୀବନ କଟାଇବେ, କମଲୁଦ୍ଦିନ ସେହି ସ୍ୱପ୍ନରେ ବିଭୋର ହୋଇ ବସିଥାନ୍ତି ।

କିଛି ସମୟ ପରେ ଜଣେ ସୈନିକ ଦୌଡ଼ି ଆସି କହିଲା, "ସୁଲତାନ୍! ଆମର ଦୁର୍ଭାଗ୍ୟ, ଆମେ ପରାସ୍ତ ହୋଇଗଲୁଁ । ଆପଣ ପଳାନ୍ତୁ, ନହେଲେ ବର୍ତ୍ତମାନ ଶତ୍ରୁ ସୈନ୍ୟ ଆସି ଆପଣଙ୍କୁ ମାରି ପକାଇବେ ।"

କମଲୁଦ୍ଦିନଙ୍କ ହାତରୁ ତାଙ୍କ ପାନପାତ୍ର ଖସି ପଡ଼ିଲା । ସେ ପଳାଇଗଲେ । ଘୋର ଲଜ୍ଜାରେ ସେ ଆଉ ନିଜ ଆଶ୍ରୟଦାତାଙ୍କ ପାଖକୁ ଗଲେ ନାହିଁ । ପ୍ରାୟ ଦଶଦିନ ଘୋଡ଼ା ଛୁଟାଇ ସେ ଅନ୍ୟ ଏକ ରାଜ୍ୟରେ ପହଞ୍ଚିଲେ । ସେଠାକାର ରାଜା ତାଙ୍କୁ ଚିହ୍ନି ନଥିଲେ । କମଲୁଦ୍ଦିନ ତାଙ୍କ ଦେହରକ୍ଷୀ ଭାବରେ ଚାକିରି ନେଲେ ।

କିଛିଦିନ ବିତିଗଲା । ଦିନେ ଆଉ ଜଣେ ଶକ୍ତିଶାଳୀ ରାଜା ସେ ରାଜ୍ୟ ଆକ୍ରମଣ କଲେ । କମଲୁଦ୍ଦିନଙ୍କ ଆଶ୍ରୟଦାତା ରାଜା ସଙ୍ଗେ ସଙ୍ଗେ ନିଜ ସେନାପତିମାନଙ୍କୁ ଧରି ଯୁଦ୍ଧ କ୍ଷେତ୍ରକୁ ବାହାରିଗଲେ । ସେନାପତି-ମାନଙ୍କ ସହ କାନ୍ଧକୁ କାନ୍ଧ ମିଳାଇ ସେ



ଯୁଦ୍ଧ କଲେ । ଯୁଦ୍ଧରେ ତାଙ୍କର ଜୟ ହେଲା । ଆକ୍ରମଣକାରୀ ସୈନ୍ୟଦଳ ଛିନ୍ନଛତ୍ର ହୋଇଗଲେ ।

ଜୟଲାଭ ପରେ ରାଜ୍ୟରେ ଉତ୍ସବ ହେଲା । ସେତିକିବେଳେ କମଲୁଦ୍ଦିନ ରାଜାଙ୍କୁ ପଚାରିଲେ, "ଆଜ୍ଞା, ଆପଣଙ୍କର ସେନାପତି-ମାନଙ୍କ ଯୁଦ୍ଧ କୌଶଳ ଦେଖିଲି । ସେମାନେ ବୀର ଓ ବୁଦ୍ଧିମାନ । ସେମାନେ ଥାଉଁ ଥାଉଁ ଆପଣ ଯୁଦ୍ଧକ୍ଷେତ୍ରକୁ କାହିଁକି ଗଲେ ?"

ରାଜା କହିଲେ, "ଯୁବକ ! ମୁଁ ସେମାନଙ୍କ ସହ କାନ୍ଧକୁ କାନ୍ଧ ମିଳାଇ ଲଢୁଥିଲି ବୋଲି ସେମାନେ ସେମାନଙ୍କ ଶକ୍ତି ଓ ବୁଦ୍ଧି ପୂର୍ଣ୍ଣ ମାତ୍ରାରେ ଖଟାଇଲେ । ରାଜା ନିଜେ ନେତୃତ୍ୱ ଦେଲେ ସାଧାରଣ ସୈନ୍ୟମାନେ ବି ଉତ୍ସାହ ଅନୁଭବ କରନ୍ତି । ଏହା ସ୍ୱାଭାବିକ । ତା'ଛଡ଼ା ମୋ ରାଜ୍ୟ ରକ୍ଷା ପାଇଁ ସେମାନେ ଜୀବନ ବିପନ୍ନ କରିବେ ଅଥଚ ମୁଁ ନିରାପଦ ରହିବି, ଏହା କପରି କଥା ?"

ରାଜାଙ୍କ ଉତ୍ତର ସୁଲତାନଙ୍କ ଭିତରେ ବିରାଟ ପରିବର୍ତ୍ତନ ଆଣିଦେଲା । ସେ ସେହିଦିନ ରାତିରେ ସେଠାରୁ ଚାଲିଗଲେ । କେଇଦିନ ପରେ ଦିନେ ସନ୍ଧ୍ୟାବେଳେ ସେ ନିଜ ଦୁର୍ଗ ଦୁଆରେ ପହଞ୍ଚିଲେ । "ତମେ କିଏ ?" ବୋଲି ଦୁର୍ଗର ପ୍ରହରୀ ପ୍ରଶ୍ନ କରିବାରୁ ସେ ଧୀର କଣ୍ଠରେ କହିଲେ, "ମୋତେ ତମେ ଚିହ୍ନି ପାରୁନାହଁ ? ମୁଁ ତମ ସୁଲତାନ କମଲୁଦ୍ଦିନ ।"

ଅଳ୍ପ ସମୟ ଭିତରେ ସିପାହୀ ଓ ସାଧାରଣଲୋକେ ଜମା ହୋଇଗଲେ । ସେତେବେଳକୁ ଦୁର୍ଗ ମାଡ଼ିବସିଥିବା ଅମୀରର ଅତ୍ୟାଚାରରେ ସମସ୍ତେ ତା'ର ଶତ୍ରୁ ହୋଇ ଯାଇଥାନ୍ତି । ସେମାନଙ୍କ ନିଜ ସୁଲତାନ୍‌ଙ୍କ ପାଇଁ ସେମାନେ ଅମୀର ବିରୁଦ୍ଧରେ ରାତାରାତି ବିଦ୍ରୋହ କଲେ । ଅମୀର ବନ୍ଦୀ ହେଲା । ସୁଲତାନ୍ ତାଙ୍କ ରାଜ୍ୟ ଫେରି ପାଇଲେ ଓ ସୁଶାସକ ଭାବରେ ଖ୍ୟାତି ଅର୍ଜିଲେ ।





# ବୁଦ୍ଧି ଓ ସିଦ୍ଧି

ଜାମପୁର ଥିଲା ଗୋଟିଏ ସମୃଦ୍ଧ ଓ ବଡ଼ ଗାଁ । ସେଠାକାର ଶିବନାଥଙ୍କ ଏକମାତ୍ର ପୁଅ ସୁଧୀର ନିଜ ଗାଁ ବିଦ୍ୟାଳୟରେ ପାଠ ଶେଷ କରି ଗୋଟାଏ ପ୍ରକାର ଅଳସୁଆ ହୋଇଗଲା । ଖାଲିଟାରେ ବାରନ୍ଦାରେ ବସିଥିବ, ନହେଲେ ଖଟିଆରେ ଶୋଇ ରହିଥିବ । କିଛି କାମଦାମରେ ମନ ଦେଲା ନାହିଁ । ଶିବନାଥ କି ତା' ବୋଉ ତାକୁ ଯେତେ ବୁଝାଇଲେ ବି କିଛି ଫଳ ହେଲା ନାହିଁ ।

ଶିବନାଥଙ୍କର ଜଣେ ବନ୍ଧୁ ଥିଲେ । ତାଙ୍କ ନାମ ଗୋବିନ୍ଦ । ଗୋବିନ୍ଦବାବୁଙ୍କ ଝିଅ ବାହାଘର ହେବାର ଥାଏ । ଗାଁ ବାହାରେ ତାଙ୍କର ଖଣ୍ଡିଏ ପଡ଼ିଆ ଜମି ଥିଲା । ସେ ଖଣ୍ଡି ବିକି କରି ଦେଇ ସେଥିରେ ବାହାଘର ଖର୍ଚ୍ଚ ତୁଲାଇବେ ବୋଲି ସେ ସ୍ଥିର କରିଥିଲେ । ଜମି ଖଣ୍ଡିକ ଭଲ ଦାମ୍‌ରେ ଯେ କୌଣସି ଥିଲାବାଲା ଲୋକ କିଣିବ ବୋଲି ସେ ନିଶ୍ଚିତ ଥିବାରୁ ସେ ଦିଗରେ ବେଶି ତତ୍ପରତା ଦେଖାଇ ନ ଥିଲେ । ବାହାଘର ଆଉ ଦେଢ଼ମାସ ଅଛି, ସେ ଜମି ବିକିବାକୁ ବାହାରିଲେ । କିନ୍ତୁ କୌଣସି ଲୋକ ସେ ଦାବି କରୁଥିବା ମୂଲ୍ୟ ଦେବାକୁ ପ୍ରସ୍ତୁତ ନଥିଲେ ।

ଗୋବିନ୍ଦବାବୁ ବଡ଼ ଅଡୁଆରେ ପଡ଼ିଲେ । ଜମିର ଯାହା ଉଚିତ ମୂଲ୍ୟ, ଲୋକେ ତାହା ଦେବାକୁ କାହିଁକି ପ୍ରସ୍ତୁତ ନୁହନ୍ତି, ସେକଥା ସେ ବୁଝିପାରୁ ନଥିଲେ । ଦିନେ ସେ ଦୁଃଖିତ ଭାବରେ ତାଙ୍କ ବନ୍ଧୁ ଶିବନାଥଙ୍କ ଘରକୁ ଆସି ନିଜ ସମସ୍ୟା କଥା କହିଲେ । ଶିବନାଥ ବା କ'ଣ ସାହାଯ୍ୟ କରିବେ ? ଖାଲି ସହାନୁଭୂତି ପ୍ରକାଶ କରିବା ଛଡ଼ା ତାଙ୍କର ଆଉ କିଛି କରିବାର ନଥିଲା ।



ହଠାତ୍ ପାଖ କୋଠରିରୁ ସୁଧୀରର କଣ୍ଠସ୍ୱର ଶୁଭିଲା । ସେ କହିଲା, "ଗୋବିନ୍ଦ କକା! ଆପଣ ଛଅମାସ ଆଗରୁ ଜମି ବିକିଥିଲେ ଏ ପରିସ୍ଥିତି ଉପୁଜି ନଥାନ୍ତା । ବର୍ତ୍ତମାନ ସମସ୍ତେ ଜାଣନ୍ତି କି ଆପଣଙ୍କ ଝିଅ ବାହାଘର ନିକଟ ହୋଇ ଆସିଲାଣି ଏବଂ ଆପଣଙ୍କର ଟଙ୍କା ଜରୁରି ଲୋଡ଼ା । ଆପଣ ଜମି ବିକିବାକୁ ବାଧ୍ୟ । ତେଣୁ ସମସ୍ତେ କମ୍ ଦାମ ଦେଇ ପରିସ୍ଥିତିର ସୁବିଧା ନେବାକୁ ଚାହୁଁଛନ୍ତି । ଗୋଟାଏ କାମ କରନ୍ତୁ । ଜମିଦାର ତୀର୍ଥଯାତ୍ରାରୁ ଗତକାଲି ଫେରିଛନ୍ତି । ସେ ଆପଣଙ୍କ ଝିଅ ବାହାଘର କଥା ଜାଣି ନାହାନ୍ତି । ତା'ଛଡ଼ା ଆପଣଙ୍କର ସେ ଜମି ଖଣ୍ଡିକ ତାଙ୍କ ଡୋଟାକୁ ଲଗିଛି । ଆପଣ ଯାଇ ତାଙ୍କୁ କହନ୍ତୁ । ସେ ଉଚିତ ମୂଲ୍ୟ ଦେଇ କିଣି ନେବେ ।"

ସୁଧୀରର ପରାମର୍ଶ ଗୋବିନ୍ଦବାବୁଙ୍କ ମନରେ ନୂତନ ଆଶାର ସଞ୍ଚାର କଲା । ସେ ଜମିଦାରଙ୍କ ପାଖକୁ ଗଲେ । ସତରେ ଜମିଦାର ତାଙ୍କ ଡୋଟାକୁ ଲଗିଥିବା ଜମି ପାଇ ଆନନ୍ଦିତ ହେଲେ ଏବଂ ସ୍ୱତଃସ୍ଫୂର୍ତ୍ତ ଭାବରେ ଜମିର ସାଧାରଣ ମୂଲ୍ୟ ଅପେକ୍ଷା କିଛି ବେଶି ମଧ୍ୟ ଦେଲେ ।

ଗୋବିନ୍ଦବାବୁଙ୍କ ଝିଅ ବାହାଘର ଖୁବ୍ ଭଲରେ ହୋଇଗଲା । ତା'ପରେ ଦିନେ ସେ ବନ୍ଧୁ ଶିବନାଥଙ୍କ ଘରକୁ ଆସି ସିଧା ସୁଧୀର ପାଖକୁ ଯାଇ କହିଲେ, "ବାପା ସୁଧୀର! ତମ ସହ ମୁଁ କିଛି ଖୋଲାଖୋଲି କଥାବାର୍ତ୍ତା କରିବି । ତମେ କିଛି ମନେ କରିବ ନାହିଁ । ଲୋକେ ତମକୁ ଅଳସୁଆ କହନ୍ତି । ତମର ବୁଦ୍ଧି ନାହିଁ ବୋଲି ତମେ କିଛି କାମଦାମ କରୁନାହଁ, କେତେକଙ୍କ ମନରେ ଏଭଳି ଧାରଣା ମଧ୍ୟ ହୋଇଛି । ମୁଁ ଜାଣେ ଏ ଧାରଣା କେତେ ଭୁଲ । ତମେ କିଛି କର ।"

"ଲୋକେ କ'ଣ କହିଲେ ବୋଲି ମୁଁ କିଛି କରିବି? କାହିଁକି? ଲୋକେ ଯାହା ମନ ତାହା କହି ଦିଅନ୍ତି । ସେସବୁ ପ୍ରତି ମୁଁ ଖାତିର କରେ ନାହିଁ ।" ସୁଧୀର ଜବାବ୍ ଦେଲା ।



"ପୁଅ, ସେକଥା ନୁହେଁ । ମୁଁ ଜାଣେ ତମର ବୁଦ୍ଧି ଅତି ପ୍ରଖର । ତମେ ତା'ର ସଦୁପଯୋଗ ନ କରିବ କାହିଁକି ? ତମେ ତ ବାରନ୍ଦାରେ ବସି ବସି ଅନେକ ସମୟ କଟାଇ ଦିଅ । ସେମିତି ବସିବ । ଖାଲି କାନ୍ଥରେ ଝୁଲିବ ଖଣ୍ଡିଏ ପଟା । ସେଥିରେ ତମ ନାମ ଲେଖା ରହିବ ଏବଂ ତଳେ ରହିବ : 'ସର୍ବ-ସାଧାରଣ ଉପଦେଷ୍ଟା' । ଲୋକେ ସେମାନଙ୍କ ସମସ୍ୟା ବିଷୟ ତମକୁ କହିବେ । ତମେ ସେମାନଙ୍କୁ ସମାଧାନ ବିଷୟରେ ପରାମର୍ଶ ଦେବ । ଏଥିରେ କିଛି ପରିଶ୍ରମ ନାହିଁ । ବସି ରହି କିଛି ଉପାର୍ଜନ ବି ହେବ, ତମ ବୁଦ୍ଧି ବି କାମ କରିବ ଓ ତମକୁ ଆନନ୍ଦ ଦେବ । କଥା କ'ଣ କି, ଅଳସୁଆ ହୋଇ ବସି ରହିଲେ ତା'ର ଶେଷ ପରିଣତି ହୁଏ ବିଷାଦ ଓ ହତାଶା ।" ଗୋବିନ୍ଦବାବୁ ବୁଝାଇ କହିଲେ ।

ସୁଧୀର ନୀରବ ରହିବାର ଦେଖି ଗୋବିନ୍ଦବାବୁ ଉତ୍ସାହ ଅନୁଭବ କଲେ ଓ ପୁଣି କହିଲେ, "ମାତ୍ର ମାସଟିଏ ପରୀକ୍ଷା କରିଯାଉ । ଯଦି ଭଲ ନ ଲାଗିବ, ତେବେ କାମ ବନ୍ଦ କରିଦେବା । ପଟା ଖଣ୍ଡିକ ଖୋଳି ଆଣିଲେ ଗଲା !"

"ହେଉ!" ସୁଧୀର କୁଣ୍ଠିତ ସ୍ୱରରେ କହିଲା ।

ସେହିଦିନ ଉପରଓଳି ଗୋବିନ୍ଦବାବୁ ପଟାରେ ଯାହା ଲେଖା ହେବା କଥା ଲେଖି ଆଣିଲେ ଓ ତାହା ଟଙ୍ଗାଇ ଦେଲେ । ସୁଧୀର ପାଖରେ ସିଏ ବି ବସିଲେ । ଦୁଇ ତିନିଦିନ ଗଲା । କେହି କୌଣସି ଉପଦେଶ ପାଇଁ ଆସିଲେ ନାହିଁ । ତା'ପରେ ଦିନେ ସକାଳେ ଜଣେ ମେଷପାଳକ ସେବାଟେ ଯାଉଥିବା ବେଳେ ପଟାଟି ପଢ଼ି ରହିଗଲା ଓ କହିଲା, "ହଇହୋ ବାବୁ, ମୋତେ ଗୋଟାଏ ଉପଦେଶ ଦେଇ ପାରିବ ?"

"କ'ଣ ତମ ସମସ୍ୟା ?" ଗୋବିନ୍ଦବାବୁ ପଚାରିଲେ ।

ଆମେ ଆମ ମେଣ୍ଢା ପଲ ଓ ଛେଳି ପଲ ଚରାଇବା ପାଇଁ ପାହାଡ଼ ସେପଟେ ଗୃହମାନ କରି ରହିଥାଉଁ । ଆମେ ଆଠଜଣ ଅଛୁଁ ।



ସମସ୍ତେ ସାରା ରାତି ପହରା ଦେବା ସତ୍ତ୍ୱେ ହେଟା ବାଘ ଆସି ଆମର ଗୋଟାଏ ଦୁଇଟା ଛେଳିଛୁଆ ବା ମେଣ୍ଢାଛୁଆ ଚୋରାଇ ନେଇ ଯାଉଛନ୍ତି । ଆମେ ବି ଭୋର ଆଡ଼କୁ କ୍ଳାନ୍ତ ହୋଇ ଶୋଇ ପଡ଼ିବାରୁ ସେମାନେ ଏ ସାହସ କରୁଛନ୍ତି । କ'ଣ କରାଯିବ କହିଲ ?"

ସୁଧୀର ଧୀର ସ୍ୱରରେ କହିଲା, "ଦେଖ ଭାଇ, ତୁମେ ଆଠଜଣଯାକ ରାତି ଅନିଦ୍ରା ରହି ଭୋର ଆଡ଼କୁ ଶୋଇ ପଡୁଛ । ଏହାର କୌଣସି ଯୁକ୍ତି ନାହିଁ । ପ୍ରତି ରାତିରେ ପାଳି କରି ଦୁଇଜଣ ଲେଖାଏଁ ଚେଇଁଲେ ଚଳିବ । ତୁମେ ଭାବୁଥିବ, ଦୁଇଜଣ କିପରି ଏଡ଼େ ବ୍ୟାପକ ଅଞ୍ଚଳକୁ ଓଗାଳିବ । ଓଗାଳିବା ଲୋଡ଼ା ନାହିଁ । ରାତିଯାକ ମଧ୍ୟେ ମଧ୍ୟେ ଢୋଲ ପିଟୁଥିବ ! ଆଉ ଯେଉଁ ପାଖରୁ ସାଧାରଣତଃ ହେଟାମାନେ ଆସନ୍ତି, ସେଠି ନିଆଁ ଜଳାଇ ରଖିବ ।"

ଲୋକଟି ଚାଲିଗଲା । ଦୁଇଦିନ ପରେ ଆସି ଆନନ୍ଦରେ କିଛି ପଇସା ଦେଇଗଲା ଓ କହିଗଲା କି ସୁଧୀର ଦେଇଥିବା ପରାମର୍ଶ ଖୁବ୍ କାମ ଦେଇଛି ।

ଏକଥା ଗ୍ରାମଯାକ ରାଷ୍ଟ୍ର ହୋଇଗଲା । ଲୋକେ ସେମାନଙ୍କ ସମସ୍ୟା ବିଷୟରେ ଏଣିକି ପରାମର୍ଶ କରିବାକୁ ଆସିଲେ । ସୁଧୀରର ବୁଦ୍ଧିର ତାରିଫ୍ କରିବା ସଙ୍ଗେ ସଙ୍ଗେ ସେମାନେ ପଇସା ବି ଦେଲେ ।

ଏକଥା ଶୁଣିଲେ ଜମିଦାର । ସେ ସୁଧୀରକୁ ଡକାଇ ତାଙ୍କ ସମସ୍ୟା ଥୋଇଲେ । ତାଙ୍କ ଜୁଆଇଁ ମଦ୍ୟପ ହୋଇଯାଇଥାଏ । ଶତ ପରାମର୍ଶରେ ସେ ନିଶା ଛାଡ଼ିବାକୁ ରାଜି ହେଉ ନଥାଏ । ସୁଧୀରର ପରାମର୍ଶ ଅନୁସାରେ ଜମିଦାର ଗାଁ କବିରାଜଙ୍କୁ ଡକାଇ ଗୋଟିଏ ଗୁଣ୍ଡ ପ୍ରସ୍ତୁତ କଲେ । ଝିଅ ଦ୍ୱାରା ମଦ ସହ ସେ ଗୁଣ୍ଡ ମିଶାଇ ଦିଆଗଲା । ତା'ପରେ ମଦ ପିଇବା ପରେ ଜୁଆଇଁ ଅଚେତ ହୋଇଯାନ୍ତି । କବିରାଜ ଆସି କହିଲେ, "ଏଣିକି ବାବୁସାଆନ୍ତଙ୍କ ଅବସ୍ଥା ଏମିତି ହେଲାଣି ଯେ ଆଉ ମଦ ପିଇଲେ ଚେତା

ମୋଟେ ଫେରିବ ନାହିଁ, ଅର୍ଥାତ୍ ସେ ଆମକୁ ଛାଡି ଚାଲିଯିବେ !"

ଜୁଆରିଙ୍କ ହୋସ୍ ହେଲା । ସେ ମଦ ପିଆ ଛାଡ଼ିଦେଲେ ।

ଏତିକି ବେଳେ ରାଜ୍ୟରେ ଦେଖାଦେଲା ଗୋଟାଏ ଗୁରୁତର ସଙ୍କଟ । ରାଜା ଅନେକ ଦିନ ହେବ ଅସୁସ୍ଥ ରହିଥିଲେ । ଏହି ଦୁର୍ଭାଗ୍ୟ-ଜନକ ଅବସ୍ଥାର ସୁଯୋଗ ନେଇ ପଡ଼ୋଶୀ ରାଜ୍ୟର ରାଜା ଗୋଟିଏ ଦକ୍ଷ ସୈନ୍ୟଦଳ ଧରି ହଠାତ୍ ଆସି ଏ ରାଜ୍ୟର ରାଜଧାନୀରେ ପହଞ୍ଚିଗଲେ ଏବଂ ଅସୁସ୍ଥ ରାଜାଙ୍କୁ କହିଲେ, "ତମେ ଆଉ ଭଲ ହୋଇ ପାରିବ ନାହିଁ । ଅତଏବ ରାଜ୍ୟ ମୋତେ ଦେଇ ଦିଅ । ନହେଲେ ଯୁଦ୍ଧ ହେବ ।"

ସମସ୍ତେ ତଟସ୍ଥ !

ରାଜା ସୁଧୀରକୁ ଡକାଇ ପରାମର୍ଶ ଲୋଡ଼ିଲେ । ସୁଧୀର ଯାହା କହିଲା, ତାହା ରାଜାଙ୍କ ମନକୁ ପାଇଲା ।

ପରଦିନ ଅତି କୌଶଳରେ ରାଜ୍ୟଯାକ ଗୁପ୍ତଚରମାନେ ପ୍ରଚାର କରିଦେଲେ ଯେ ରାଜା ମିଛରେ ଅସୁସ୍ଥ ବୋଲି କୁହାଯାଇ ଶତ୍ରୁ ରାଜାକୁ ପ୍ରଲୁବ୍ଧ କରି ଏଠାକୁ ଅଣାଯାଇଛି । ବତର ଶତ୍ରୁରାଜା ବର୍ତ୍ତମାନ ଏଠି ଜାଲରେ ପଡ଼ିଛି । ଏଠାକାର ସୈନ୍ୟ-ମାନେ ଯାଇ ତା ରାଜ୍ୟ ଆକ୍ରମଣ କରିବାକୁ ପ୍ରସ୍ତୁତ ହେଉଛନ୍ତି ।

ଏକଥା ଶତ୍ରୁପକ୍ଷର ଗୁପ୍ତଚରମାନେ ଶୁଣିଲେ ଓ ଛାଉଣି ପକାଇ ରହିଥିବା ଶତ୍ରୁ ରାଜାକୁ କହିଲେ । ରାତାରାତି ସେ ଓ ତାଙ୍କ ସୈନ୍ୟ-ଦଳ ସେଠାରୁ ପଳାଇଗଲେ ।

ଏ ଘଟଣା ଏ ରାଜାଙ୍କୁ ଏଡ଼େ ଖୁସି କଲା ଯେ ସେ ତାଙ୍କ ଅସୁସ୍ଥତା କଥା ଭୁଲିଗଲେ ଓ କ୍ରମେ ସୁସ୍ଥ ହେଲେ । ସୁଧୀରକୁ ସେ ନିଜର ଜଣେ ମନ୍ତ୍ରୀ ପଦରେ ନିଯୁକ୍ତ କଲେ । ସୁଧୀର କ୍ରମେ ବହୁ ଭଲ କାମରେ ରାଜାଙ୍କ ସହାୟତା କଲା ।






ଅନୁରାଧାପୁରରେ ଦୋକାନଟିଏ କରି ରହୁଥିଲେ ଶମ୍ଭୁଦାସ । ସେ ଦୂରବର୍ତ୍ତୀ ଏକ ସ୍ଥାନରୁ ଆସିଥିଲେ । ତେଣୁ ସେ ଅତୀତରେ କ'ଣ କରୁଥିଲେ, ସେକଥା ଅନୁରାଧାପୁରର କେହି ଲୋକ ଜାଣି ନଥିଲେ ।

କେବଳ ସେକଥା ମୋଟାମୋଟି ଜାଣିଥିଲା ବିଜୟ । ବିଜୟ ଗୋଟିଏ ପିଲା । ଛେଉଣ୍ଡ । ତାକୁ ଶମ୍ଭୁଦାସ ପାଳିଥିଲେ ।

ବିଜୟକୁ ଶମ୍ଭୁଦାସ ବହୁତ ସ୍ନେହ କରୁଥିଲେ । ସେ ଯେପରି ଭଲ ମଣିଷ ହେବ, ସେଥିପାଇଁ ଅନେକ ଉପଦେଶ ଦେଉଥିଲେ ।

ବିଜୟ ଜାଣିଥିଲା ଶମ୍ଭୁଦାସ ଅତୀତରେ ଜଣେ ବଡ଼ ମନ୍ତ୍ରବିଦ୍ ଥିଲେ । କିନ୍ତୁ ସେ ମନ୍ତ୍ରତନ୍ତ୍ର ଛାଡ଼ିଦେଇଥିଲେ । ସାଧାରଣ ଜୀବନ ବିତାଉଥିଲେ ।

ଶମ୍ଭୁଦାସଙ୍କ ପାଖରେ ରହିଥିଲା ଗୋଟାଏ ପୁରୁଣା ବୀଣା । ସେ ଏକଦା ବୀଣା ବଜାଉଥିଲେ ବୋଲି ବିଜୟ ଅନୁମାନ କରି ପାରୁଥିଲା । କିନ୍ତୁ ସେ କାହିଁକି ଆଉ ବଜାଉ ନଥିଲେ, ସେକଥା ସେ ଜାଣି ନଥିଲା । "ଜେଜେ ! ତମେ ବୀଣା ରଖିଛ, କିନ୍ତୁ ବଜାଉ ନାହିଁ କାହିଁକି ?" ବିଜୟ ଥରେ ଥରେ ପଚାରେ ।

ଶମ୍ଭୁଦାସ ହସି ଦିଅନ୍ତି ଓ କହନ୍ତି, "ମୁଁ ନ ବଜାଇଲେ କ'ଣ ହେଲା, ତୁ ବଜାଇବୁ ଓ ବଜାଇ ଦେଶ ସାରା ବିଖ୍ୟାତ ହେବୁ । ଏହାହିଁ ହେବ ତୋ ପ୍ରତି ମୋର ସର୍ବଶ୍ରେଷ୍ଠ ଦାନ ।"

"ତେବେ ମୋତେ ବୀଣା ଶିଖାଉ ନାହିଁ କାହିଁକି ?" ବିଜୟ ପଚାରେ ।

"ଶିଖାଇବା ଦରକାର ନାହିଁ ।" ଶମ୍ଭୁଦାସ କହନ୍ତି । ବିଜୟ ଏ କଥାର ରହସ୍ୟ ବୁଝିପାରେ ନାହିଁ ।

"ଜେଜେ! ବୀଣା ଯଦି ନ ଶିଖିବି, ତେବେ ତାହା ବଜାଇ ଖ୍ୟାତି ଅର୍ଜନ କରିବି କିପରି?" ସେ ପଗୃରେ।

ଶମ୍ଭୁଦାସ କହନ୍ତି, "ମୁଁ ତୋତେ କୌଣସି ବୃଥା ପ୍ରତିଶ୍ରୁତି ଦେଉନାହିଁ। ଯାହା କହୁଛି, ତାହା ସତ୍ୟ। ଠିକ୍ ବେଳେ ଏହାର ରହସ୍ୟ ବୁଝାଇ କହିବି। ବ୍ୟସ୍ତ ହେବା ଦରକାର ନାହିଁ।"

ଦିନେ ଶମ୍ଭୁଦାସ ଅସୁସ୍ଥ ହୋଇ ପଡ଼ିଲେ। ସେ ବିଜୟକୁ ପାଖକୁ ଡାକି କହିଲେ, "ବାପା! ମୁଁ ବୁଝି ପାରୁଛି, ସଂସାର ଛାଡ଼ି ଚାଲିଯିବାକୁ ମୋର ଆଉ ବିଳମ୍ବ ନାହିଁ। ବୀଣା ରହସ୍ୟ ତୋତେ ଖୋଲି କହିଦିଏଁ। ମୁଁ ଥରେ ମୋ ମଂତ୍ରତଂତ୍ର ସାହାଯ୍ୟରେ ଗୋଟିଏ ସଂଗୀତପ୍ରବୀଣା ପରୀକୁ ଏ ବୀଣା ଭିତରେ ବନ୍ଦୀ କଲି। କିନ୍ତୁ ପୂରାପୂରି ବନ୍ଦୀ ହେବା ପୂର୍ବରୁ ସେ ଗୋଟାଏ ଅଭିଶାପ ଦେଲା କି ମୁଁ ଯଦି କେବେ ସେ ବୀଣା ବଜାଇବି, ତେବେ ମୋ ଛାତି ଫାଟିଯିବ। ତେଣୁ ମୁଁ ବଜାଏଁ ନାହିଁ। କିନ୍ତୁ ତୁ ବଜାଇବୁ। ବୀଣା ତାରରେ ହାତ ଦେବା ମାତ୍ରେ ସେ ପରୀହିଁ ବଜାଇବାକୁ ବାଧ୍ୟ ହେବ। ଅପରୂପ ସଂଗୀତ ବାହାରିବ। ଖାଲି ଗୋଟିଏ ସର୍ତ୍ତ: ମଧ୍ୟ ରାତି ପରେ ବଜାଇବୁ ନାହିଁ। ବଜାଇଲେ ପରୀ ଖସି ପଳାଇବ।"



ଏକଥା କହିବାର ଅଳ୍ପ ସମୟ ପରେ ଶମ୍ଭୁଦାସ ପରଲୋକଗମନ କଲେ। ତାଙ୍କ ଶୁଦ୍ଧି କାର୍ଯ୍ୟ ଶେଷ ହେବା ପରେ ବିଜୟ ଦିନେ ସନ୍ଧ୍ୟାରେ ବୀଣା ଧରି ବସିଲା। ବାସ୍ତବିକ, ତା ଅଙ୍ଗୁଳି ତାରରେ ଲାଗିବା ମାତ୍ରେ ଅପୂର୍ବ ସଂଗୀତର ଝଙ୍କାର ନିର୍ଗତ ହେଲା। ସେ କିଛି ସମୟ ବଜାଇ ବୀଣା ରଖିଦେଲା।

ବୀଣାର ମାଧୁର୍ଯ୍ୟରେ ସେ ଏତେ ମୁଗ୍ଧ ହେଲା ଯେ ସେପରି ରୀତିରେ ବଜାଇଲେ ସେ ଯେ ନିଶ୍ଚୟ ଅତ୍ୟନ୍ତ ବିଖ୍ୟାତ ସଂଗୀତକାର ଭାବରେ ସମ୍ମାନିତ ହେବ, ଏ ବିଷୟରେ ତା'ର ସନ୍ଦେହ ରହିଲା ନାହିଁ। ସେ ଅନେକ ସମୟ ଚୁପ୍‌ଚାପ୍ ବସିରହି ଚିନ୍ତା କଲା।

ତା'ପରେ ସେ ଗୋଟିଏ ବିଶେଷ ସିଦ୍ଧାନ୍ତ ନେଲା ଓ ମଧ୍ୟରାତ୍ରି ପର୍ଯ୍ୟନ୍ତ ଅପେକ୍ଷା କଲା ।

ସେ ପୁଣି ମଧ୍ୟ ରାତ୍ରରେ ବୀଣାଟି ହାତକୁ ନେଲା । ସଙ୍ଗେ ସଙ୍ଗେ ସେ ଶୁଣିଲା ଗୋଟିଏ ମଧୁର ହାସ୍ୟ ଓ ଦେଖିଲା ପରୀର ରୂପ ।

"ଧନ୍ୟବାଦ । କିନ୍ତୁ ତମେ ଜାଣି ଜାଣି ମୋତେ ଛାଡ଼ି ଦେଲ ନା ଦୈବାତ୍ ଭୁଲ୍ କରି ମଧ୍ୟ ରାତ୍ରରେ ବୀଣା ବଜାଇଲ ?" ପରୀ ପଚାରିଲା ।

"ନା, ନା, ମୁଁ ଜାଣି ଜାଣି ତୁମକୁ ଛାଡିଦେଲି । ତୁମେ ବନ୍ଦିନୀ ହୋଇ ରହିବ, ଏକଥା ମୁଁ ଚାହେଁନା ।" ବିଜୟ କହିଲା ।

"ବଡ଼ ଆଶ୍ଚର୍ଯ୍ୟର କଥା ତ ! ତମେ ବହୁତ ମହତ୍ ପିଲା ଦେଖୁଛି ! ସଙ୍ଗୀତଜ୍ଞ ଭାବରେ ଜଗତ୍‌ବିଖ୍ୟାତ୍ ହେବାକୁ ତମର ଅଭିଳାଷ ନାହିଁ ?" ପରୀ ପଚାରିଲା ।

"ନା, ତମକୁ ବନ୍ଦିନୀ କରି ରଖି କଷ୍ଟ ଦେଇ ଜଗତ୍‌ବିଖ୍ୟାତ୍ ହୋଇ ମୁଁ କୌଣସି ଆନନ୍ଦ ପାଇବି ନାହିଁ । ବରଂ ସର୍ବଦା ଗ୍ଲାନି ଅନୁଭବ କରିବି ।" ବିଜୟ କହିଲା ।

ପରୀ ଆନନ୍ଦରେ ଚାଲିଗଲା ।

ବିଜୟ ଦୀର୍ଘନିଃଶ୍ୱାସ ଛାଡ଼ିଲା ।

ପରଦିନ ବିଜୟ ବୀଣାକୁ ବିକି କରିଦେବା ନିମନ୍ତେ ମନେ ମନେ ସ୍ଥିର କରି ଆଉ ଥରେ ବୀଣାକୁ ବଜାଇବା ମାତ୍ରେ ଅଦ୍ଭୁତ ସୁନ୍ଦର ସଙ୍ଗୀତ ବାହାରିଲା । ସେ ଆଶ୍ଚର୍ଯ୍ୟ ହେଲା । ସଙ୍ଗେ ସଙ୍ଗେ ଶୁଭିଲା ମଧୁର କଣ୍ଠସ୍ୱରରେ ପରୀର କଥା : "ବର୍ତ୍ତମାନ ମୁଁ ମୁକ୍ତ । କିନ୍ତୁ ତମେ ଯେତେବେଳେ ବୀଣା ବଜାଇବ, ମୋ ନିଜ ଇଚ୍ଛାରେ ମୁଁ ଆସି ତମପାଇଁ ବଜାଇବି । ତମ ଦୟା ପ୍ରତି ମୋର ଏହାହିଁ ହେବ ପ୍ରତିଦାନ ।"

ବିଜୟ ପରୀକୁ ଧନ୍ୟବାଦ ଦେଲା । ସେ ଅଦ୍ଭୁତ ଶକ୍ତିଶାଳୀ ବୀଣାବାଦକ ହିସାବରେ ଖ୍ୟାତିଲାଭ କଲା ।





# ଶିବ ପୁରାଣ

ଥରେ ପାର୍ବତୀ ବିଷ୍ଣୁଙ୍କ ପାଖକୁ ଯାଇ କହିଲେ "ଭାଇ, ଶିବଙ୍କୁ ଗଜାସୁର ନିଜ ହୃଦୟରେ ଲିଙ୍ଗ ରୂପରେ ଲୁଚାଇ ରଖିଛି। ତାଙ୍କୁ କୈଳାସ ଫେରାଇ ଆଣିବା ପାଇଁ କିଛି ବ୍ୟବସ୍ଥା କରନ୍ତୁ।"

ଶ୍ରୀବିଷ୍ଣୁ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ, "ଭଉଣୀ, ମୁଁ ଅଳ୍ପ ଦିନରେ ତୁମ ଦୁଃଖ ଦୂର କରିବି।" ତା'ପରେ ସେ କୈଳାସ ଓ ପାର୍ବତୀଙ୍କୁ ରକ୍ଷା କରିବା ଲାଗି ଗଣମାନଙ୍କୁ ନିଯୁକ୍ତ କରି ରୁଦ୍ରଗଣଙ୍କୁ ସାଥିରେ ଧରି ସ୍ୱର୍ଗକୁ ଗଲେ। ସେଠାରୁ ଦେବତାମାନଙ୍କୁ ସଙ୍ଗରେ ଧରି ଛଦ୍ମବେଶରେ ଯାଇ ଶୋଣିତପୁରରେ ପହଞ୍ଚିଗଲେ।

ମନେ ମନେ ବିଷ୍ଣୁ ନାନା ଉପାୟ ପାଞ୍ଚିଲେ। କି ପ୍ରକାର ଘଟଣା ସୃଷ୍ଟି ହେବ ଯେଉଁଥିରେ ଭୋଳାନାଥ ଶିବ ଗଜାସୁର ଦେହରୁ ବାହାରି ଆସିବେ ଓ ଗଜାସୁର ମରିବ; ଅଥଚ ସବୁ କିଛି ଶାନ୍ତିପୂର୍ଣ୍ଣ ଭାବରେ ହେବ। ଅନେକ ଭାବି ଭାବି ସେ ଏକ ଉପାୟ ସ୍ଥିର କଲେ। ସେହି ଅନୁସାରେ ରୁଦ୍ରଗଣଙ୍କୁ ଓ ଦେବତାମାନଙ୍କୁ କାର୍ଯ୍ୟ କରିବାକୁ ଆଦେଶ ଦେଲେ। ସେମାନେ ସମସ୍ତେ ଏକ ବାଦ୍ୟକାର ଓ ନୃତ୍ୟକାର ଦଳ ବାନ୍ଧି ଗଜାସୁରର ରାଜନଗର ଆଡ଼େ ଚାଲିଲେ।

ନନ୍ଦୀ ହୋଇଥାନ୍ତି ଏକ ଷଣ୍ଢ। ବିଷ୍ଣୁ ତାକୁ ନଚେଇବାବାଲା କେଳା। ଅନ୍ୟ ଦେବତା ଓ ରୁଦ୍ରଗଣମାନେ ବିଭିନ୍ନ ବାଦ୍ୟକାରୀ ସାଜି ସାଙ୍ଗରେ ଚାଲିଥା'ନ୍ତି। ଏପରି ଏକ ନୂତନ ପ୍ରକାରର ନୃତ୍ୟବାଦ୍ୟ

## ୯. ଗଜାସୁର ନିଧନ



ଦଳ ଦେଖି ଗଜାସୁର ତାଙ୍କୁ ନଗର ମଧ୍ୟକୁ ଡାକିନେଲା । ସେଠାରେ ଏମାନେ ସମସ୍ତେ ଶିବସ୍ତୋତ୍ର ଗାନ କଲେ ଓ ଷଣ୍ଢ ସେଠାରେ ନାଚିଲା ।

ଏଣେ ଗଜାସୁରର ହୃଦୟସ୍ଥ ଶିବ ନିଜର ସ୍ତୋତ୍ର ଶୁଣି ଆନନ୍ଦରେ ଫୁଲିବାକୁ ଲାଗିଲେ । କ୍ରମେ ଗଜାସୁରର ନିଶ୍ୱାସ ନେବାରେ କଷ୍ଟ ହେଲା । ସେ ଜାଣିପାରିଲା ତା'ର ମୃତ୍ୟୁ ସୁନିଶ୍ଚିତ । ସେ ଧୀର ଭାବରେ ଶିବଙ୍କୁ ପ୍ରାର୍ଥନା କଲା, "ହେ ପରମେଶ୍ୱର, ମୋତେ ରକ୍ଷା କର ।" ଶିବ ଭିତରେ ଥାଇ କହିଲେ, "ତୋର ମୃତ୍ୟୁ ସୁନିଶ୍ଚିତ । ଏବେ କିଛି ବର ମାଗି ନେ ।"

"ହେ ପରମେଶ୍ୱର ମୋର ଶିର ଯେପରି ସର୍ବଦା ବନ୍ଦନୀୟ ରହିବ । ମୋର ଚର୍ମ ଆପଣ ନିଜେ ଧାରଣ କରିବେ ଓ ମୋତେ ପୁନର୍ଜନ୍ମରୁ ନିସ୍ତାର ଦେବେ ।" ଗଜାସୁର ପ୍ରାର୍ଥନା କଲା ।

ଶିବଙ୍କର ଗଜାସୁର ଥିଲା ପରମ ଭକ୍ତ । ତେଣୁ ଗଜାସୁରର ପ୍ରାର୍ଥନା ପୂରଣ କରିବା ପରେ ସେ ଗଜାସୁରର ପେଟ ଚିରି ବାହାରକୁ ବାହାରି ଆସିଲେ । ଏପରି ଏକ ଅଭିନବ ଉପାୟରେ ଗଜାସୁରର ଯେ ମୃତ୍ୟୁ ହେବ ସେକଥା କେହି କଳ୍ପନା କରିପାରି ନଥିଲେ । ଗଜାସୁରର ଅସ୍ୱାଭାବିକ ମୃତ୍ୟୁ ଦେଖି ତା'ର ବନ୍ଧୁ କୁଟୁମ୍ବ ଓ ସୈନ୍ୟଦଳ ଦେବତାମାନଙ୍କର ଛଦ୍ମବେଶ ଲକ୍ଷ୍ୟ କରି ରୁଷ୍ଟ ହୋଇଗଲେ ଓ ସଙ୍ଗେ ସଙ୍ଗେ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଲେ । ତୁମୁଳ ଯୁଦ୍ଧ ଲାଗିଲା । କହିବା ବାହୁଲ୍ୟ ଯୁଦ୍ଧରେ ସମସ୍ତ ଅସୁର ନିହତ ହେଲେ । ବାକି ଅଳ୍ପ କେତେଜଣ ନିଜର ଜୀବନ ଧରି ପଳାଇଗଲେ ।

ତା'ପରେ ସେମାନେ କୈଳାସ ଫେରିବେ, ଇତିମଧ୍ୟରେ ଜଣେ ପ୍ରଥମେ ଯାଇ ଏହି ସୁଖବର ପାର୍ବତୀଙ୍କୁ ଦେଇ ଦେଇଛି । ପାର୍ବତୀ ଖୁସିରେ ସ୍ନାନ କରିବାକୁ ଗଲେ । ସ୍ନାନ କରିସାରି ସମସ୍ତଙ୍କୁ ସ୍ୱାଗତ କରିବେ । ସ୍ନାନ ପୂର୍ବରୁ ସେ ଗଣମାନଙ୍କୁ ଦ୍ୱାରରେ ନିଯୁକ୍ତ କଲେ ଓ ସେମାନଙ୍କର ଅଧିପତି ହେଲେ



ଗଣେଶ ଯାହାଙ୍କୁ ମାତା ପାର୍ବତୀ ନିଜର ଦିବ୍ୟ ଶରୀରରୁ ଉତ୍ପନ୍ନ କରିଥିଲେ ।

ପାର୍ବତୀ ସ୍ନାନ କରିବାକୁ ଯିବା ସମୟରେ ଗଣମାନେ ଦ୍ୱାରରକ୍ଷା କରୁଥା'ନ୍ତି । ଏହି ସମୟରେ ରୁଦ୍ରଗଣ ଆସି ପହଞ୍ଚିଲେ । ପାର୍ବତୀଙ୍କ ଗଣମାନେ ଦ୍ୱାର ଖୋଲି ସେମାନଙ୍କୁ ପ୍ରବେଶ କରିବାକୁ ଦେଲେ ନାହିଁ । ଦୁଇ ଦଳଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ଅନେକ ମଲେ ଓ କେତେକ ଫେରିଯାଇ ଶିବଙ୍କୁ ସବୁ ଜଣାଇଲେ ।

ଏଇ ସମୟରେ ଆସି ସେଠାରେ ପହଞ୍ଚିଲେ ନାରଦ । ସେ କହିଲେ, "ପରମେଶ୍ୱର । ଏ କ'ଣ ହେଲା ? ପାର୍ବତୀଙ୍କ ଦ୍ୱାରପାଳମାନେ ଏତେ ଗର୍ବୀ ସେ ରୁଦ୍ରଗଣଙ୍କୁ ମଧ୍ୟ ମାରି ପକାଇଲେ ।" ଶିବଙ୍କୁ ବହୁତ ଅପମାନ ହେଲା । ସେ ଗଣମାନଙ୍କୁ ମାରି ଦେବାକୁ ତ୍ରିଶୂଳକୁ ଆଦେଶ ଦେଲେ । ତ୍ରିଶୂଳ ଯାଇ ସବୁ ଗଣଙ୍କୁ ମାରିଦେଲା ।

ଏସବୁ କଥା ଦେଖି ପାର୍ବତୀ ଶୋକରେ ଅଧୀର ହୋଇ ପଡ଼ିଲେ । କାରଣ ଗଣମାନେ ତାଙ୍କର ପୁତ୍ରସମ ପୁଣି ଗଣର ଅଧିପତି ତାଙ୍କର ପୁତ୍ର । କିନ୍ତୁ ଶିବ ତ ଏସବୁ କଥା ଜାଣି ନଥା'ନ୍ତି ।

ଏବେ ଗଣମାନେ ନିହତ ହେବା ପରେ ଦ୍ୱାରରେ କେହି ରକ୍ଷୀ ନଥା'ନ୍ତି । ଶିବ ଓ ବିଷ୍ଣୁ ଅବାଧରେ ଓ ଆନନ୍ଦରେ ପ୍ରବେଶ କଲେ । ଭିତରେ ପାର୍ବତୀଙ୍କୁ ଶୋକମଗ୍ନା ଦେଖି ବିଷ୍ଣୁ କହିଲେ, "ଭଉଣୀ ତୁମକୁ ଖୁସି କରିବା ପାଇଁ ତୁମରି କଥା ଅନୁସାରେ ସବୁ ମୁଁ କଲି । ଗଜାସୁରର ମୃତ୍ୟୁରେ ଯେତେବେଳେ ତ୍ରିଲୋକ ଆନନ୍ଦିତ ସେତେ-ବେଳେ ତୁମେ କାହିଁକି ଶୋକମଗ୍ନା । କାରଣ କୁହ ମୁଁ ତୁମର କଷ୍ଟ ଦୂର କରିବି ।"

ପାର୍ବତୀ କହିଲେ, "ଭାଇ, ଅକାରଣରେ ଈଶ୍ୱର କୁପିତ ହୋଇ ମୋର ପୁତ୍ରଗଣଙ୍କୁ ମାରି ଦେଇଛନ୍ତି । ମୁଁ କପରି ଖୁସି ହେବି ?"

ଶିବ ତ ସର୍ବଦା ଭୋଳାନାଥ । ଏତେ ଘଟଣା ସବୁ ହୋଇଯାଇଛି ସେ କିଛି ମନେ ରଖି ନାହାନ୍ତି । ତାଙ୍କୁ ସବୁକଥା ବୁଝାଇ



ଦିଆଯିବା ପରେ ସେ ଖୁବ୍ ଦୁଃଖିତ ହେଲେ ଓ ନିଜ କର୍ମ ପାଇଁ ଅନୁତାପ କଲେ । ତା'ପରେ ସେ ଓ ବିଷ୍ଣୁ ପାର୍ବତୀଙ୍କୁ କହିଲେ କି ଯାହା ହେବାର ହୋଇଛି, ଏବେ ସେମାନଙ୍କୁ ବଞ୍ଚାଇବାର ପ୍ରଚେଷ୍ଟା କରାଯିବ ।

ସେତିକିବେଳେହିଁ ଶିବ ଗଜାସୁରକୁ ତିନୋଟି ବର ଦେଇଥିବା କଥା ପ୍ରକାଶ କଲେ । ଶିବଙ୍କ ଆଦେଶ ଅନୁସାରେ ଗଜାସୁରର ମଥାକୁ ଆଣି ଗଣେଶଙ୍କ ଦେହରେ ଯୋଡ଼ି ଦିଆଗଲା । ତା'ପରେ ଅନ୍ୟାନ୍ୟ ଗଣମାନଙ୍କୁ ମଧ୍ୟ ସେହିପରି ଭାବରେ ବଞ୍ଚାଇ ଦିଆଗଲା । ସେମାନେ ସମସ୍ତେ ମିଶି ଥିଲେ ଏକୋଇଶ ଜଣ ।

ଏବେ ସମସ୍ତେ ଆନନ୍ଦିତ ହେଲେ । ଲମ୍ବୋଦର ଗଣେଶଙ୍କୁ ଦେଖି ଶିବ ଖୁବ୍ ଖୁସି ହେଲେ । ଗଣେଶ ମଧ୍ୟ ପ୍ରଥମଥର ପାଇଁ ପିତା ଶିବଙ୍କୁ ଦେଖି ମହାଖୁସି ହେଲେ । ଦେବତାମାନେ ଓ ରୁଦ୍ରଗଣମାନେ ଗଜାସୁରର ମୃତ୍ୟୁ ଯୋଗୁ ନାନା ପ୍ରକାର ଉତ୍ସବ କଲେ । ଏହି ମହା ଉତ୍ସବରେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ସମେତ ଅନ୍ୟାନ୍ୟ ଦେବୀ ଓ ଦେବତାମାନେ ଉପସ୍ଥିତ ଥା'ନ୍ତି । ଏହି ସୁଯୋଗରେ ଉପବ୍ରହ୍ମା ବିଶ୍ୱଦର୍ଶୀ ଆସି ଶିବ ଓ ବିଷ୍ଣୁଙ୍କ ପାଖରେ କହିଲେ, "ଆଜ୍ଞା, ମୋର ଗୋଟିଏ ପ୍ରାର୍ଥନା ଅଛି । ସେଇଟି ପୂରଣ ହେଲେ ଏଇ ଉତ୍ସବଟି ସମ୍ପୂର୍ଣ୍ଣ ହୋଇ ପାରିବ । ଆପଣମାନେ ଓ ଦେବୀମାନେ ଅଭୟ ଦେଲେ କହିବି ।"

ସମସ୍ତେ ଏକ ସ୍ୱରରେ କହିଲେ, "ଆଚ୍ଛା କୁହନ୍ତୁ ।"

"ମୋର ଠିକ୍ ଏକୋଇଶଟି ସର୍ବସୁଲକ୍ଷଣୀ କନ୍ୟା ଅଛନ୍ତି । ଗଣେଶଙ୍କ ସମେତ ଅନ୍ୟ ଗଣମାନଙ୍କ ସଂଖ୍ୟା ମଧ୍ୟ ଏକୋଇଶ । ଏମାନଙ୍କ ସହିତ ମୋ ଝିଅମାନଙ୍କର ବିବାହ ଦିଅନ୍ତୁ ।"

ସମସ୍ତେ ରାଜି ହୋଇଗଲେ । ମହା ସମାରୋହରେ ବ୍ରହ୍ମାଙ୍କ ପୌରହିତ୍ୟରେ ବିବାହ ସମ୍ପନ୍ନ ହେଲା । ଜ୍ୟେଷ୍ଠାକନ୍ୟା ଜୟଲକ୍ଷ୍ମୀଙ୍କ ସହ ଗଣେଶଙ୍କର ବିବାହ ହେଲା ।

ଠିକ୍ ଏଇ ସମୟରେ ଆସି ପହଞ୍ଚିଲେ କୁମାର କାର୍ତ୍ତିକେୟ । ସେ ଶିବଙ୍କୁ କହିଲେ ଜ୍ୟେଷ୍ଠପୁତ୍ର ହିସାବରେ ଗଣମାନଙ୍କର ଅଧିପତି ସେ ନିଜେ ହେବା ଉଚିତ୍ ।

ଶିବ କହିଲେ, "କୁମାର, ତୁମେ ତ ଅନେକ ପୂର୍ବରୁ ଦେବସେନାଙ୍କର ଅଧ୍ୟକ୍ଷ ହୋଇଛ ତେଣୁ ଦେବଗଣଙ୍କ ଉପରେ ତୁମକୁ ଆଧିପତ୍ୟ ମିଳିଛି ।" ତଥାପି କୁମାର ନିଜ ଦାବୀକୁ ସ୍ୱୀକାର କରିବା ପାଇଁ ଶିବଙ୍କୁ କହିଲେ ।

କିଛି ଉପାୟ ନ ପାଇ ଶିବ କୁମାର ଓ ଗଣେଶଙ୍କ ମଧ୍ୟରେ ପ୍ରତିଯୋଗିତା କରିବାର ସ୍ଥିର କଲେ । ସେ କହିଲେ, "ଯିଏ ପ୍ରଥମେ ସବୁ ପୁଣ୍ୟକ୍ଷେତ୍ର ଦର୍ଶନ କରି, ସେଠାରେ ସ୍ନାନ କରି ଓ ପୃଥିବୀ ପରିକ୍ରମା କରି ଆଗେ ଫେରି ଆସିବ ସେହିଁ ଗଣମାନଙ୍କର ଅଧିପତି ହେବ ।" ଏକଥା କହି ଶିବ କୁମାରଙ୍କୁ ବାହନ ସ୍ୱରୂପ ମୟୂର ଓ ମୂଷା ରୂପରେ ସ୍ଥିତ ଗଜାସୁରକୁ ଗଣେଶଙ୍କ ବାହନ ଭାବରେ ଦେଲେ ।

କୁମାର ଖୁସି ହୋଇ ମୟୂରବାହନ ଚଢ଼ି ନୀଳ ଆକାଶରେ ଉଡ଼ିଗଲେ । ଗଣେଶ ଯାଇ ମା' ପାର୍ବତୀଙ୍କ ପାଖରେ ପହଞ୍ଚି ଅଭିଯୋଗ କରି କହିଲେ, "ମା, ଦେଖ ମୋ ପ୍ରତି ଅନ୍ୟାୟ କରାଗଲା । କୁମାର ଶକ୍ତିଶାଳୀ ତାଙ୍କୁ ମୟୂର ବାହନ ଦେଲେ । ଆଉ ମୁଁ ଖର୍ବକାୟ, ସ୍ଥୂଳ, ଲମ୍ବୋଦର ମୁଁ କପରି ମୂଷା ଉପରେ ବସି ପୃଥିବୀ ପରିକ୍ରମା କରିବି ? ଏ ପ୍ରତିଯୋଗିତାର କିଛି ମୂଲ୍ୟ ନାହିଁ । ବରଂ ଆରମ୍ଭରୁ କୁମାରଙ୍କୁ ଗଣାଧିପତି ପଦ ଦେଇ ଦେଇଥିଲେ ତ ସବୁ କଥା ସରିଥା'ନ୍ତା ।"

ପାର୍ବତୀ କହିଲେ, "ବତ୍ସ, ତୁ ଯାଇ ତୋର ମାମୁଁ ଶ୍ରୀବିଷ୍ଣୁଙ୍କୁ କିଛି ଉପାୟ କହିଦେବା ପାଇଁ ଅନୁରୋଧ କର । ସେ ତୋର ସହାୟତା କରିବେ ।"





# ସହନ ଶକ୍ତିର ରହସ୍ୟ

ଶ୍ୱେତନଗର ଏକ ପାହାଡ଼ିଆ ଅଞ୍ଚଳରେ ଥିବା ସ୍ଥାନ । ଥରେ ପ୍ରବଳ ଶୀତ ପଡ଼ୁଥାଏ । ଲୋକମାନେ ଘରୁ ବାହାରକୁ ବାହାରିପାରୁ ନଥା'ନ୍ତି । ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଲେ କାମଦାମ ଆରମ୍ଭ କରନ୍ତି ଓ ସୂର୍ଯ୍ୟାସ୍ତ ହେବା ଆଗରୁ ଘରେ କବାଟ ଦେଇ ରହନ୍ତି । ଶୀତର ଏପରି ଭୟଙ୍କର ପ୍ରକୋପ ଥିଲା ଯେ ଗରିବ, ଧନୀ ନିର୍ବିଶେଷରେ ସମସ୍ତେ କଷ୍ଟ ପାଉଥା'ନ୍ତି ।

ସେ ବର୍ଷ ପୁଣି ଯେପରି ଶୀତ ପଡ଼ୁଥାଏ, ସେପରି ଶୀତ ଗତ କୋଡ଼ିଏ ବର୍ଷ ଭିତରେ କେବେ ଜଣା ନଥିଲା ବୋଲି ବୁଢ଼ାଏଁ କହୁଥାନ୍ତି ।

ଭଗତସିଂହ ସେ ଅଞ୍ଚଳର ଜଣେ ଧନୀ ଓ ବିଶିଷ୍ଟ ବ୍ୟକ୍ତି ଥିଲେ । ତାଙ୍କର ସେତେବେଳକୁ ବୃଦ୍ଧାବସ୍ଥା । ଶୀତର ପ୍ରକୋପରେ ତାଙ୍କ ଦେହ ଏତେ କମ୍ପୁଥାଏ ଯେ ଯେତେ କମ୍ବଳ ରେଜେଇ ଘୋଡ଼େଇ ହେଲେ ବି ଫଳ କିଛି ହେଉ ନଥାଏ । ଏଣେ ଦେହ ମଧ୍ୟ ଆଗରୁ ଅସୁସ୍ଥ ଥାଏ । ତାଙ୍କର ଏ ଅବସ୍ଥାର କିପରି ପ୍ରତିକାର କରିବାକୁ ହେବ ସେକଥା ପରିବାରର ସମସ୍ତିଙ୍କର ଚିନ୍ତାର ବିଷୟ ହୋଇ ପଡ଼ିଲା ।

ତାଙ୍କ ପୁଅ ଜିତେନ୍ଦ୍ର ଏବେ ଘରକଥା ସବୁ ବୁଝୁଥାଏ । ରାତିରେ ଭଗତବାବୁଙ୍କ ଦେହର ଅବସ୍ଥା ଖରାପ ହେବାରୁ ଜିତେନ୍ଦ୍ରର ମା' କହିଲେ, "ପୁଅ, ମୁଁ ଭାବୁଛି ଏ ଭୟଙ୍କର ଶୀତର ପ୍ରକୋପରେ ତାଙ୍କୁ ଜର ଧରିଛି । ତୁ ବୈଦ୍ୟଙ୍କୁ ଶୀଘ୍ର ଡ଼ାକ ।"

"କିନ୍ତୁ ମା', ଏବେ ଘର ବାହାରକୁ ପାଦ ଦେବାର କାହାର ସାହସ ଅଛି ? ଯଦିବା କିଏ କଷ୍ଟକରି ବୈଦ୍ୟ ପାଖକୁ



ଯାଏ ତେବେ ତୁ କ'ଣ ଭାବୁଛୁ ବୈଦ୍ୟ ଏ ଶୀତରେ ଏଠାକୁ ଆସିବେ ?" ଜିତେନ୍ଦ୍ର କହିଲା ।

"ବୈଦ୍ୟ ଆସିବେ ନାହିଁ ସତ । କିନ୍ତୁ କିଏ ଏଠାରୁ ଯାଇ ରୋଗର ଲକ୍ଷଣ କହିଲେ ସେ ହୁଏତ କିଛି ଔଷଧ ପଠାଇ ଦେବେ ।" ଜିତେନ୍ଦ୍ରର ମା' କହିଲେ ।

ଜିତେନ୍ଦ୍ର ଏକଥା ଉପରେ ଯୁକ୍ତି କରି ପାରିଲା ନାହିଁ । କିନ୍ତୁ ତା' ନିଜର ମଧ୍ୟ ଦେହ ଭଲ ନଥାଏ । ମା ତାହା ଜାଣିଲେ ଆହୁରି ଉକଣ୍ଠିତ ହେବେ ବୋଲି ସେ ସେକଥା ତାଙ୍କୁ କହି ନଥାଏ । କିନ୍ତୁ ଏ ଦାରୁଣ ଥଣ୍ଡାରେ ବାହାରକୁ ଗଲେ ଯେ ତା' ନିଜ ଅବସ୍ଥା ଅସମ୍ଭାଳ ହେବ, ଏଥିରେ ତା'ର କୌଣସି ସନ୍ଦେହ ନଥାଏ ।

ସମସ୍ତଙ୍କୁ କୁହାଗଲା ବୈଦ୍ୟଙ୍କ ଘରକୁ ଯିବା ପାଇଁ । କିନ୍ତୁ କେହି ବାହାରିଲେ ନାହିଁ । ଚାକରମାନେ ମଧ୍ୟ ମନା କଲେ । ଜିତେନ୍ଦ୍ର ରାଗିଯାଇ ଗୋପାଳ ନାମକ ଚାକରକୁ ଧମକାଇ କହିଲା, "ତୁ ଆଜି ବୈଦ୍ୟ ଘରକୁ ନ ଗଲେ ଆଉ ଏଠାରେ ଚାକିରି କରିପାରିବୁ ନାହିଁ ।" ବାଧ୍ୟ ହୋଇ ନିଜର ଅନିଚ୍ଛା ସତ୍ତ୍ୱେ ଗୋପାଳ ବାହାରିଲା ।

ଯିବାକୁ କବାଟ ଖୋଲିବା ମାତ୍ରେ ଦେଖିଲା ଜଣେ ଭିକାରି କହୁଛି, "ଭାଇ, କିଛି ଖାଇବାକୁ ଦିଅ ।" ଭିକାରିଟି ନାମକୁ ମାତ୍ର ଖଣ୍ଡେ ଛିଣ୍ଡା କନା ପିନ୍ଧିଛି । ସାରା ଦେହ ଫୁଙ୍ଗୁଳା । ହାତରେ ମାଟିର ଭିକ୍ଷାପାତ୍ର ଧରିଛି । ଆଉ ସବୁଠାରୁ ଆଶ୍ଚର୍ଯ୍ୟର କଥା ଯେ ସେହି ଭୟଙ୍କର ଶୀତରେ ସେ ନିର୍ବିକାର ହୋଇ ଠିଆ ହୋଇଥାଏ, ଦେହ ଟିକିଏ ବି ଥରୁ ନଥାଏ ।

ଏ ଦୃଶ୍ୟ ଦେଖି ଗୋପାଳ ଦୌଡ଼ି ଦୌଡ଼ି ଭିତରକୁ ଯାଇ ଜିତେନ୍ଦ୍ରକୁ କହିଲା, "ବାବୁ, ଆମ୍ଭର ବୈଦ୍ୟଙ୍କ ପାଖକୁ ଯିବା ଦରକାର ନାହିଁ । ଜଣେ ସାଧୁ ଆସି ଆମ ଦ୍ୱାରରେ ଛିଡ଼ା ହୋଇଛନ୍ତି । ତାଙ୍କର ମହିମା ଅଦ୍ଭୁତ । ଏ ଭୟଙ୍କର ଶୀତରେ ଖାଲି ଦେହରେ ନିର୍ବିକାର ହୋଇ ଠିଆ ହୋଇଛନ୍ତି ।"



ଏହି ଖବର ଶୁଣି ଇନ୍ଦ୍ରେ ଦେଖିବାକୁ ଦୌଡ଼ି ଆସିଲା । ଭିକାରି ତାକୁ ଦେଖି କହିଲା, "ବାବୁ, ମୁଠାଏ ଖାଇବାକୁ ଦିଅ । ମୁଁ କ୍ଷୁଧାର୍ତ୍ତ ।"

ଇନ୍ଦ୍ରେ ଭିକାରିକୁ ଚାହିଁ କହିଲା, "ମୋ ବାପା ଜର ଓ ଥଣ୍ଡାରେ କମ୍ପୁଛନ୍ତି । ତୁମେ ଯଦି ତାଙ୍କୁ ଭଲ କରିଦେବ ତେବେ ବହୁତ ଖାଦ୍ୟ ତମକୁ ଦେବି ।"

ଭିକାରି କହିଲା, "ଏତେ ବଡ଼ ସର୍ତ୍ତ କାହିଁକି ବାବୁ? ମୁଁ ସାମାନ୍ୟ ଭିକାରି । ଜଡ଼ିବୁଟି କ'ଣ ମୁଁ ଜାଣିନାହିଁ ।"

ଇନ୍ଦ୍ରେ କିଛି ସମୟ ଭାବି କହିଲା, "ତେବେ ଦେଖ, ଆଉ ଗୋଟିଏ କାମ କରିଦିଅ । ପାଖ ଗଳିରେ ବୈଦ୍ୟ ରହୁଛନ୍ତି । ମୁଁ ଚିଠିଟିଏ ଲେଖି ଦେଉଛି । ତମେ ସେଠାକୁ ଯାଇ ମୋ ବାପାଙ୍କ ପାଇଁ କିଛି ଔଷଧ ନେଇ ଆସ ।"

"ଏବେ ମୋ ଶରୀର ଅତ୍ୟନ୍ତ ଅବସନ୍ନ ଓ କ୍ଲାନ୍ତ । ଟିକିଏ ଯଦି ଖାଇପିଇ ସୁସ୍ଥ ହୁଅନ୍ତି ତେବେ ଅବଶ୍ୟ ସେଠାକୁ ଯା'ନ୍ତି ।" ଭିକାରି କହିଲା ।

"ଭାଇ, ଟିକିଏ ଭାବି ଦେଖ, ତମେ ଔଷଧ ନିହାତି ଯଦି ନ ଆଣିବ ତେବେ ମୁଁ ଆଉ କାହାକୁ ପଠାଇବି ।" ଇନ୍ଦ୍ରେ କହିଲା । କାରଣ ଇନ୍ଦ୍ରେ ଭାବୁଥିଲା ଯଦି ଭିକାରି ଆଗ ଖାଇଦେବ ତେବେ ଯିବାକୁ କେବେ ମଙ୍ଗିବ ନାହିଁ ।

ଭିକାରି ଖାଇବା ଆଶାରେ ବାଧ୍ୟ ହୋଇ ଯିବା ପାଇଁ ରାଜି ହେଲା । ଇନ୍ଦ୍ରେ ରୋଗର ସବୁ ଲକ୍ଷଣ କାଗଜରେ ଲେଖି ଦେଲା ଓ କହିଲା, "ବୈଦ୍ୟଙ୍କଠାରୁ ଉତ୍ତର ଲେଖାଇ ଆଣିବ ।" କାରଣ, ପୁଣି ଇନ୍ଦ୍ରେ ମନରେ ଆଶଙ୍କା ହେଲା, ଲୋକଟି ରାସ୍ତାରୁ ମାଟିର ଗୁଳି ବନାଇ ଔଷଧ ବୋଲି ନେଇ ଆସିବ ନାହିଁ ତ?

ଭିକାରି ଯିବା ପରେ ଇନ୍ଦ୍ରେ ବାପାଙ୍କ ଚିକିତ୍ସା କଥା ଭାବି ଖୁସି ହେଲା ଓ ମା, ଭାଇଭଉଣୀ ସହ କଥାବାର୍ତ୍ତା କଲା । ଇନ୍ଦ୍ରେର ମା' କହିଲେ ଏପରି କ୍ଷୁଧାରେ, ଖାଲି ଦେହରେ ଏଇ ଭୟାନକ ଶୀତରେ ଯିବା ଆସିବା ଅସମ୍ଭବ । ସେମାନେ ଏକ

ପ୍ରକାର ତେର ପାଟିରେ ରଖିଥା'ନ୍ତି, ଯଦ୍ୱାରା ଥଣ୍ଡା ଲଗେ ନାହିଁ । ସେ ଫେରିଆସୁ ତା'ଠାରୁ ତାହା କ ତେର ପଚାରିବା ।"

ଜତେନ୍ଦ୍ର କହିଲା, "ସେ ଜଡ଼ିବୁଟି ଚେର-ମୂଳ ଜାଣୁ ବା ନ ଜାଣୁ ତା'ପରି ଜଣେ ସହନଶୀଳ ବ୍ୟକ୍ତିକୁ ଚାକର ରଖିବା ଦରକାର । କେଡ଼େ ବିପଦରେ ସାହାଯ୍ୟ କଲା !"

କଥାବାର୍ତ୍ତା ହେବା ଭିତରେହିଁ ଭିକାରି ଔଷଧ ଧରି ଲେଉଟି ଆସିଲା । ଔଷଧ ଖାଇ ବୁଢ଼ା ଆରାମରେ ଶୋଇଗଲେ ।

ଇତିମଧ୍ୟରେ ଜତେନ୍ଦ୍ରର ସ୍ତ୍ରୀ କମଳା ଭିକାରିକୁ ପେଟଭରି ଖୁଆଇଲା । ଖାଇବା ପରେ ସେ ପଚାରିଲା, "ତମେ କ'ଣ ଗାଈ ଦୁହିଁ ଶିଖିଛ ?"

"ହଁ ମା' ଜାଣେ," ଭିକାରି କହିଲା ।

ଶୀତ ଯୋଗୁ ଚାରୋଟି ଦୁଧିଆଳି ଗାଈଙ୍କୁ କେହି ଦୁହିଁ ନାହାନ୍ତି । କମଳା ଲୋଟା ଓ ବାଲଟି ନେଇ କହିଲା, "ଯାଅ, ଦୁଧ ଦୁହିଁ ଆଣ ।"

ଭିକାରି ଲୋଟା ବାଲଟି ନେଇ ଦୁଧ ଦୁହିଁ ଆଣିଲା । ଏକଥା ଦେଖି ସମସ୍ତେ ଖୁସି । ବହୁତ ଶୀଘ୍ର କାମ କରୁଛି ଓ ଶୀତ ଖୁବ୍ ସହି ପାରୁଛି । ଜତେନ୍ଦ୍ରର ମା' ପଚାରିଲେ, "ତୋର ନାମ କ'ଣ ?"

"ମୋହନ" ।

ତା'ପରେ ମୋହନକୁ ଏକ ସପ ଦିଆଗଲା ଶୋଇବାକୁ । ଶୋଇବା ବେଳକୁ ସେ ଜତେନ୍ଦ୍ରଙ୍କ ମା'ଙ୍କୁ କହିଲା, "ମା', ମୋତେ ଘୋଡ଼ାଇ ହେବାକୁ କିଛି ଦିଅ ।"



ଇନ୍ଦ୍ରଜିତ୍‌ର ମା' କହିଲେ, "ବାହାର ପିଣ୍ଡାରେ କମ୍ବଳଟାଏ ଶୁଖୁଛି ନେଇ ଆସି ଘୋଡ଼ାଇ ହୋଇପଡ଼ ।"

ସେତିକବେଳେ ଝିଲ୍‌କାଏ ଶୀତ ପବନ ମଶି ଆସି ପଞ୍ଜରା ଥରାଇ ଦେଲା ।

ମୋହନ କହିଲା, "ଘର ଭିତରେ ଯଦି କୌଣସି କମ୍ବଳ ଥାଏ ତାହାହେଲେ ମୋତେ ଦିଅ । ବର୍ତ୍ତମାନ ବାହାର ପିଣ୍ଡାକୁ ଯାଇ ହେଉନି ।"

ସମସ୍ତେ ଆଶ୍ଚର୍ଯ୍ୟ ହୋଇ କହିଲେ, "କ'ଣ, ତୁମକୁ ବି ଥଣ୍ଡା ଲାଗୁଛି ?"

"ବାବୁ ଆପଣ କ'ଣ କହୁଛନ୍ତି ? ଗରିବ ହେଉ ବା ଧନୀ ହେଉ, ଥଣ୍ଡା କାହାକୁ ନ ଲାଗିବ ?" ମୋହନ କହିଲା ।

"ତମେ ଯେତେବେଳେ ବୈଦ୍ୟ ପାଖକୁ ବାହାରିକୁ ଗଲ ଓ ଦୁଧ ଦୁହିଁବାକୁ ଗଲ ସେତେବେଳେ ଥଣ୍ଡା ଲାଗୁ ନଥିଲା ?" ଇନ୍ଦ୍ରଜିତ୍ କହିଲା ।

"ବାବୁ, ସେକଥା ମୁଁ କିଛି ଜାଣିନାହିଁ । କେତେଦିନ ହେବ ଲୋକ ଉପାସରେ ଥିଲି । ତେଣୁ ସେତେବେଳେ ଲୋକର କଷ୍ଟହିଁ ସବୁଠାରୁ ଅଧିକ ଥିଲା । ତେଣୁ ଶୀତର ପ୍ରକୋପ ବାଧୁ ନଥିଲା । ଆଉ ଦୁଧ ଦୁହିଁବା ବେଳେ ଶୀତ ଲାଗିଲେ ମଧ୍ୟ କୃତଜ୍ଞତା ସ୍ୱରୂପ ସେ କାମ ମୁଁ କଲି । କାରଣ ତା' ପୂର୍ବରୁ ମା' ମୋତେ ପେଟେଭରି ଖାଇବାକୁ ଦେଇଥିଲେ । ତେଣୁ ତାଙ୍କ କଥା ମାନି ଦୁଧ ଦୁହିଁଦେଲି ।" ମୋହନ କହିଲା ।



ଏପରି ଉତ୍ତର ଶୁଣି ଇତେନ୍ଦ୍, ମନରେ ଏକ ନୂଆ ଭାବନା ଆସିଲା । ସେ ଭାବିଲା, କ୍ଷୁଧାର ଜ୍ୱାଳାରେ ସେ ଶୀତର ପ୍ରକୋପ ଭୁଲିଗଲା । ପୁଣି କୃତଜ୍ଞତାର ଭାବ ଯୋଗୁ ସେ ଶୀତକୁ ଖାତିର କଲା ନାହିଁ । କିନ୍ତୁ ନିଜ ପାଇଁ କମ୍ବଳର ଦରକାର ହେଲେ ତାକୁ ଶୀତର ପ୍ରକୋପ ଜଣାଗଲା । ତା' ଆଗରେ ମୋହନର ଉତ୍ତମ ସ୍ୱଭାବହିଁ ପ୍ରକଟ ହେଲା । ତା' ଭିତରେ ଥିଲା କୃତଜ୍ଞତା ଓ ସ୍ପଷ୍ଟବାଦୀତା । ତଥାପି ଇତେନ୍ଦ୍, ମନରେ ଏକ ଛୋଟ ସନ୍ଦେହ ରହିଗଲା ।

ସେ ମୋହନକୁ ପଚାରିଲା, "ଆଚ୍ଛା କ୍ଷୁଧା ଯେତେ ବେଶି ହେଉ ବା କୃତଜ୍ଞତା ଯେତେ ବେଶି ହେଉ ଶରୀରର ପୁଣି ତ ସହ୍ୟ କରିବାର ଶକ୍ତି ଅଛି ! ମୋତେ ଆଶ୍ଚର୍ଯ୍ୟ ଲାଗୁଛି ଯେ ଯେଉଁ ଶୀତରେ ରକ୍ତ ଜମାଟ ବାନ୍ଧିଯିବ ତାକୁ ତୁମେ କିପରି ସହ୍ୟ କରି ପାରିଲ ?"

ଏବେ ମୋହନ ଅଳ୍ପ ହସି କହିଲା, "ବାବୁ, ଯାହାଙ୍କ ପାଖରେ ସୁଖସୁବିଧା ଅଛି ସେମାନେ ଶୀତ ଦେଖି ବେଶି ଡରନ୍ତି । ମୋ ମତରେ ଏ ଶୀତ ଏତେ ଉତ୍କଟ ନୁହେଁ ଯେ ମଣିଷ କାମଧନ୍ଦା ଛାଡ଼ି ବସିବ । ତା'ଛଡ଼ା ଏ ଭୟଙ୍କର ଶୀତରୁ ରକ୍ଷା ପାଇବା ପାଇଁ ଯେତେବେଳେ ମୋ ପାଖରେ କିଛି ନାହିଁ, ସେତେବେଳେ ମୁଁ ମୋର ମାନସିକ ଶକ୍ତି ପ୍ରୟୋଗ କରେ । ବାସ୍, ଏହାହିଁ ମୋର ସହନଶକ୍ତିର ଅନ୍ତର୍ନିହିତ ରହସ୍ୟ ।"

ଇତେନ୍ଦ୍, ସବୁ ବୁଝିଗଲା । ସେହିଦିନଠାରୁ ଘରଲୋକେ ମଧ୍ୟ ସମସ୍ତେ ଶିଖିଗଲେ ଯେ ଚେଷ୍ଟାକରି ଅନେକ କଷ୍ଟ ସହି ନିଆ ଯାଇ ପାରେ । ଚାକରମାନଙ୍କର ମଧ୍ୟ ଆଳ କାଢ଼ିବା ଅଭ୍ୟାସ ସେହିଦିନଠୁ ବନ୍ଦ ହୋଇଗଲା । ଆଉ ମୋହନ ସେ ଘରର ଜଣେ ସାଧାରଣ ସେବକ ନ ହୋଇ ପରିବାରର ଜଣେ ବିଶ୍ୱସ୍ତ ଓ ଘନିଷ୍ଠ ବ୍ୟକ୍ତି ଭାବରେ ରହିଲା ।



# ଗୃଧ୍ର

ଉଚ୍ଚ ପାହାଡ଼ରୁ ଆମେ ତଳେ ଥିବା ଗଛ ଓ ଘର, ରାସ୍ତା ସବୁ ଦୂରବୀକ୍ଷଣ ଯନ୍ତ୍ର ଯୋଗେହିଁ ଦେଖିଥାଉ । କିନ୍ତୁ ଦୂରରେ ଥିବା ଜିନିଷକୁ ଖାଲି ଆଖିରେ ଦେଖି ପାରିବା ପକ୍ଷୀ ହେଉଛନ୍ତି ଶାଗୁଣା । ସେମାନଙ୍କ ଆଖିର ଢାଞ୍ଚା ଦୂରବୀକ୍ଷଣ ଯନ୍ତ୍ର ପରି । ନିକଟସ୍ଥ ଓ ଦୂରସ୍ଥ ଉଭୟ ଦୃଷ୍ଟି ସେମାନଙ୍କର ଅଛି । ଏହା ସେମାନଙ୍କୁ ଖାଦ୍ୟ ଅନ୍ୱେଷଣରେ ସାହାଯ୍ୟ କରେ ।

ଶାଗୁଣାର ଶରୀର ବିଶାଳ, ପ୍ରାୟ ଏକ ମିଟର ଲମ୍ବା । ପକ୍ଷ ଦୁଇଟି ଅତ୍ୟନ୍ତ ବଡ଼ । ସେହି ପକ୍ଷ ସାହାଯ୍ୟରେ ସେମାନେ ଆକାଶରେ ବହୁ ଉପରକୁ ଉଠେଥା'ନ୍ତି ଓ ସେଠାରୁ ଖାଦ୍ୟ ଅନ୍ୱେଷଣ କରନ୍ତି । ସେମାନଙ୍କ ବେକ ଓ ମୁଣ୍ଡରେ ଲୋମ ବା ପର କିଛି ନଥାଏ । ପଞ୍ଝା ଖୁବ୍ ଶକ୍ତିଶାଳୀ । ଥଣ୍ଟ ବଡ, ମଜବୁତ୍ ଓ ତଳକୁ ମୋଡ଼ି ହୋଇଥାଏ । ସେମାନେ ବିଶେଷ ରୂପେ ମାଂସାହାରୀ ହେଲେ ମଧ୍ୟ, ଶିକାର କରି ନ ଖାଇ ମୃତ ଦେହ ଖାଇବାରେ ସେମାନେ ଅଭ୍ୟସ୍ତ ।

ଏସିଆ, ଆଫ୍ରିକା ଓ ଇଉରୋପର କେତେକ ଅଞ୍ଚଳରେ ଏମାନେ ଦଳବାନ୍ଧି ଥା'ନ୍ତି ଓ ମୃତ ପଶୁପକ୍ଷୀଙ୍କ ଦେହ ଖୋଜି ଖୋଜି ଆନନ୍ଦରେ ଖା'ନ୍ତି । ଆହାର ନ ମିଳିଲେ ଉପାସରେ ଦିନ ପରେ ଦିନ ରହି ପାରନ୍ତି; ଆହାର ମିଳିଲେ ପ୍ରୟୋଜନ ଅପେକ୍ଷା ଅଧିକ ଖାଇ ଦିଅନ୍ତି । ଏମାନେ ଶବ ସବୁ ଖାଇ ସଫା କରିବା ଦ୍ୱାରା ବାୟୁମଣ୍ଡଳର ଦୂଷିତ ଭାବ ଦୂର ହୁଏ ।

ନାନା ରଙ୍ଗର ଶାଗୁଣା ଅଛନ୍ତି, କିନ୍ତୁ ଭାରତ ବର୍ଷରେ କେବଳ କଳାରଙ୍ଗର ଶାଗୁଣା ଅଧିକ ଦେଖାଯା'ନ୍ତି । ଫୁଲି ଶାଗୁଣା ନାମକ ଲଲ୍ ମୁହଁବାଲା ଏକ ପ୍ରକାର ଶାଗୁଣା ଭାରତ ବର୍ଷରେ ଥିଲେ; ଏବେ କାଳକ୍ରମେ ନିଶ୍ଚିହ୍ନ ହୋଇ ଆସିଲେଣି ।





Anil Kumar Panigrahi

# ନୂଆ ସକାଳ ହେଲା, ନୂଆ ଖରା ପଡ଼ିଲା




## ନୂଆ ସନଲାଇଟ୍

### ଡିଟର୍ଜେଣ୍ଟ ପାଉଡର

**ଆପଣଙ୍କ ଲୁଗାପଟାରେ ଖରା'ର ଆଭା ଉକୁଟାଏ !**

ଆପଣ ବି ଚାଳ ସରକୁ ନେଇ ଆସନ୍ତୁ ସନଲାଇଟ୍'ର ଝଲମଲ ଆଭା । ନୂଆ ସନଲାଇଟ୍ ଡିଟର୍ଜେଣ୍ଟ ପାଉଡର— ଓଜନରେ ଏକଦମ ହାଲୁକା, ଅଥଚ ପ୍ରଭାବ ତା'ର ଅନେକ ଅଧିକ । ଅନ୍ୟ ଦାମିକା ପାଉଡରମାନଙ୍କ ପରି ଦାମିକା, ହେଲେ ଦାମ ମନେ ହୁଏ ଅନେକ କମ !

ସନଲାଇଟରେ ଅଛି ଏକ ପଦାର୍ଥ ବିଶେଷ, ଯାହା ସାଧାରଣ ପାଉଡରଗୁଡ଼ିକରେ ନ ଥାଏ ଲବଲେଶ, ଏହା ଲୁଗାପଟାର ତନ୍ତୁ ତନ୍ତୁରୁ ମଇଳା କାଢ଼ି ବାହାର କରେ, ଅସଲ ଆଭା ଉକୁଟାଏ ସେ ସବୁରେ ।

ସନଲାଇଟରେ ନା ହାତକୁ କଷ୍ଟ, ନା ହୁଏ ଲୁଗାପଟାର ଅନିଷ୍ଟ । ଆଉ ଏହାର ସତେଜ ମୃଦୁ ମନ ମୁଗ୍ଧେ, ଆପଣଙ୍କ ଲୁଗାପଟାରେ ଭରେ ବିଶେଷତ ସୁରଭି ।

ତେବେ ଆସନ୍ତୁ, ଆପଣ ବି ସନଲାଇଟ୍'ର ଝଲମଲ ଆଭା ଜୀବନରେ ଉକୁଟାନ୍ତୁ । ଥରଟିଏ ବ୍ୟବହାର କରନ୍ତୁ ଅବଶ୍ୟ— ଦାମ ଅନେକ କମ!

**ସୂର୍ଯ୍ୟପ୍ରଭା ସମ ଝଲମଲ କରେ ପୋଷାକ ତବ ।**

ହିନ୍ଦୁସ୍ତାନ ଲିଭରଙ୍କ ଏକ ଉତ୍କୃଷ୍ଟ ଉତ୍ପାଦନ ।

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଜାନୁଆରି ୧୯୮୬ ସଂଖ୍ୟାରେ ପ୍ରକାଶ ପାଇବ



M. Natarajan



M. Natarajan

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ନଭେମ୍ବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର । ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ । ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ସେପ୍ଟେମ୍ବର ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ପାଣିକୁ ଦେଖିଲେ ଲାଗଇ ଡର ?

ଦ୍ୱିତୀୟ ଚିତ୍ର : କଆଁ ସଙ୍ଗେ ମୁହିଁ ଖେଳଇ ଖେଳ !

ପୁରସ୍କାର ବିଜୟିନୀ : ଲାବଣ୍ୟବତୀ ବେହେରା, ମାନସିଂ ପାଟଣା, କଟକ ।

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

## ପ୍ରଶ୍ନମାଳାର ଉତ୍ତର

୧. ମାଲେସିଆର "କ୍ଲାଙ୍ଗ୍" । ୨. ଖାରବେଳ । ୩. କୁଜଙ୍ଗ ରାଣୀ ଭାଗବତୀ ପାଟମହାଦେଈ । ୪. ପାରାଦ୍ୱୀପଗଡ଼ର ତ୍ରିଲୋକନାଥ ମନ୍ଦିର । ୫. ଭୋଗରାଇ ଥାନାର ଚନ୍ଦନେଶ୍ୱରଠାରେ ।

Printed by B.V. REDDI at Prasad Process Private Ltd., and Published by B. VISWANATHA REDDI on behalf of CHANDAMAMA PUBLICATIONS, 188, N.S.K. Salai, Madras-600 026. (India). Controlling Editor: NAGI REDDI.

# ଜହ୍ନମାମୁଁ

ଆଲୋକ ଓ ଆନନ୍ଦର ମାସିକ ପତ୍ରିକା



* ଭାରତର ପ୍ରାଚୀନ କାହାଣୀମାଳା ସହିତ ନୂତନ କାହାଣୀମାଳାର ଅପୂର୍ବ ସମନ୍ୱୟ ।
* ସରଳ ଓ ସଂଯତ ଭାଷାର ପ୍ରକୃଷ୍ଟ ଉଦାହରଣ—ଜହ୍ନମାମୁଁ ।
* ହାସ୍ୟରସ ସହ ମାନବିକତା ଓ ନୀତିଶିକ୍ଷାରେ ସମୃଦ୍ଧ ପତ୍ରିକା—ଜହ୍ନମାମୁଁ ।
* ଜହ୍ନମାମୁଁ କେବଳ ଶିଶୁ ବା କିଶୋରମାନଙ୍କ ପତ୍ରିକା ନୁହେଁ, ପରିବାରର ସମସ୍ତେ ଏହା ଉପଭୋଗ କରନ୍ତି ।
* ସାଧାରଣଜ୍ଞାନର ଭଣ୍ଡାର—ଜହ୍ନମାମୁଁ ।
* ଇଂରାଜୀ ଓ ସଂସ୍କୃତ ସମେତ ତେରଗୋଟି ଭାଷାରେ ପ୍ରକାଶିତ ଏ ପତ୍ରିକା ଭାରତର ଏକତାର ପ୍ରତୀକ ।

'ଜହ୍ନମାମୁଁ' ପଢ଼ନ୍ତୁ ଓ ପଢ଼ାନ୍ତୁ ।

ବାର୍ଷିକ ଦେୟ : ଟ ୩୦-୦୦



'ଜହ୍ନମାମୁଁ'ର ଗ୍ରାହକ ହେବା ନିମନ୍ତେ ଆପଣଙ୍କ ପୂରା ଠିକଣା ସହ ମନିଅର୍ଡର ତଳ ଠିକଣାକୁ ପଠାନ୍ତୁ :

## ଡଲ୍‌ଟନ୍ ଏଜେନ୍‌ସିଜ୍

ଚନ୍ଦାମାମା ବିଲ୍ଡିଂସ

